ଭକ୍ତକବି ୰ ଦୀନକୃଷ୍ଣ ଦାସଙ୍କ ରଚିତ

# ଧର୍ମପୁରାଣ

ଶ୍ରୀ ଅରକ୍ଷିତ ଦାସଙ୍କ ଦ୍ୱାରା

ସଂଶୋଧିତ ଓ ଦ୍ୱିତୀୟବାର ପ୍ରକାଶିତ




ପ୍ରାପ୍ତିସ୍ଥାନ

ଦାଶରଥି ପୁସ୍ତକାଳୟ

ବାଲୁବଜାର, କଟକ-୨

ମୂଲ୍ୟ ୫୦ ପ	ପଚସ୍ତରି ନୂଆ ପଇସା

# ଧର୍ମ ପୁରାଣ



## ଶ୍ରୀ ଗଣେଶାୟ ନମଃ

ରାଗ—ବଙ୍ଗଳାଶ୍ରୀ

ଯୁଧିଷ୍ଠିର ଦେବଙ୍କ ଶ୍ରୀମୁଖ ବଚନ ଭୀମ ଆଗେ ପରକାଶ ।
ପିତୃକାର୍ଯ୍ୟ ଅର୍ଥେ ଯାଗ କରିବା କୁବେରପୁରେ ଯାଇ ଆସ ।
ଆପଣେ ଶ୍ରୀଧର ଯମଙ୍କ ଦ୍ୱାର ଆଣିଲେ ପିତା ସନ୍ଦେଶ
ଶିଶୁମତି କୃଷ୍ଣଦାସ ଭଣେ ହରି ଦ୍ୱାରକାପୁରେ ପ୍ରବେଶ ।
ଭୀମକୁ ରାଜନ ଯୁଧିଷ୍ଠିର ନରସାଇଁ ବୋଇଲେ ଶୁଣରେ ବାବୁ ।
ଯାଗ ଶାଳାରେ ଅନ୍ନଛତ୍ର ହୋଇବ କୁବେର ଠାବଁକ ଯିବୁ ॥
ବସିବୁ କରରେ ହୋଇ ଧୀରମତି କହିବୁ ଭୁ କଥା ପେଲ ।
ଲକ୍ଷେ ଭରଣ ଧାନ ଋଣ ମାଗିବୁ ଆମ୍ଭେ ବୋଲିଅଛୁଁ ବୋଲି ॥
ନ ପୁଣ ଆଣ୍ଠୁ କରଇ ସେ ମୁରୁଠ ଧନପତି ବଡଲୋକ ।
ଦେଲେ ନ ଦେଲେ ଭୁନ ହୋଇ ଆସିବୁ ମନେ ନ କରିବୁ ଦୁଃଖ ॥
ଯୁଧିଷ୍ଠିର ବାଣୀ ଭୀମସେନ ଶୁଣି ପାଦେ ପ୍ରଣିପାତ କଲ୍ ।
ଧର୍ମ ନୃପତିଙ୍କ ଆଜ୍ଞା ଶିରେ ଘେନି କୁବେର ଠାବଁକ ଗଲ୍ ।
ଦେଖିଲ୍ ପୁର ସେ ଅତ୍ୟନ୍ତ ସୁନ୍ଦର ପଟାନ୍ତର ଦେବା ନାହିଁ ।
ସ୍ୱର୍ଗ ମର୍ତ୍ତ୍ୟ ତ୍ରିଭୁବନ ପଦାର୍ଥ ଠୁଳ ହୋଇଅଛୁ ତହିଁ ।
ଦ୍ରବ୍ୟ ଭବନ ମୁକୁତା ଝରମାନ ହୀର ମାଣିକ୍ୟ ବକାଶେ ।
କୋଟି ଚନ୍ଦ୍ରମା କ ଉଦେ ହୋଇଅଛୁ ସେହି ପରକାର ଦଶେ ॥
ସୁବର୍ଣ୍ଣର କମ ଅତି ଅନୁପମ ମାଣିକ୍ୟର ପୀଢ଼ ତଳ ।
ବିଶ୍ୱକର୍ମା ଲାଗି ନିର୍ମାଣ କରଛୁ ଯହିଁକି ଯେମନ୍ତ ସଜ ।

ଦେଖି ମହାମତି ହୋଇଣ ଦ୍ରୁପତି ବିଚାରଇ ବୃକୋଦର ।
ଆଜ ମୋ ଜୀବନ ସୁଫଳ ହୋଇଲା ଦେଖିଲି ଏ ଦିବ୍ୟ ପୁର ।।
ପିତାଙ୍କର କାର୍ଯ୍ୟ ସିଦ୍ଧ ହେବ ଆଜ ନେବଇଁ ଅନେକ ଦ୍ରବ୍ୟ ।
ଯେତେବେଳେ ଯାହା ବିଚାର ଲୋଡ଼ିବା ସମ୍ଭିଲ ହୋଇବ ସର୍ବ ।।
ଏହି ରତ୍ନପୁର ଦେବଙ୍କ ଭଣ୍ଡାର ପ୍ରତେ ପାଇଲି ମୋ ମନେ ।
କୁବେର ହୋଇ କେବଣ ମହାତମା ନ ଦେଖିଲି ତ ନୟନେ ।।
ଏହି କଥା ଭାଳି ଧୀରେ ପାଦ ଚାଳି ଭିତରେ ପ୍ରବେଶ କଲା ।
ମଝି ଅଗଣାରେ ବସେ ଧନପତି ଖଣ୍ଡ ଦୂରରୁ ଦିଶିଲା ।।
ହେଠବଦନ ହୋଇଣ ଧନପତି ପାକଶାଳାର ସେ କୁଞ୍ଜି ।
ଶିରେ ମୁଣ୍ଡାଇ ହାହାକାର କରଣ ଥୋଇଛୁ ଆପଣେ ସଞ୍ଜି ।
ଏହନକ ରୀତି ଦେଖିଣ ମାରୁତି ଅତି ଚମତ୍କୃତ ହୋଇ ।।
ମନେ ବିଚାରିଲା ଏ ପୁର ଭିତରେ ଦରିଦ୍ର ଅଛୁ ତ ରହି ।
ଏ ଦେବ ଭଣ୍ଡାର ସୁବର୍ଣ୍ଣର ପୁର ଅନ୍ତରରେ ନିରମାଣି
ଏ ପୁର ଭିତରେ ଏଡ଼େ ଦରିଦ୍ରକୁ ବିଧାତା ଥୋଇଛୁ ଆଣି ।
ସୁନା ରୂପା ହୀରା ମାଣିକ୍ୟ ନୀଳା ଯେ ଗଡ଼ାଗଡ଼ି ଯାଉଅଛୁ ।
ଏତେ ପଦାର୍ଥରୁ ଏତେ ଦରିଦ୍ରକୁ ପ୍ରାପତ ନୋହିଲା କିଛୁ ।।
କିସ କରିବା କାହିଁକି ଏବେ ଯିବା ମନେ କଲା ମହା ଚିନ୍ତା ।
କୁବେର ଏବେ କେଉଁଠାରେ ଅଛନ୍ତି କେ ଦେବ ତଥ୍ୟ ବାରତା ।
ଏମନ୍ତ ତହୁଁ ବିସ୍ମୟଯୁକ୍ତ ହୋଇ ହୃଦରେ ବିହନ୍ତେ ଭ୍ରମ ।
ଦେଖି ଧନପତି ମନରେ ଜାଣିଲେ ଯୁଧିଷ୍ଠିର ଭାଇ ଭୀମ ।।
ହରଷ ହୋଇଣ ବହନ ଯାଇଣ ଉତ୍ତର ପୁରରେ ପଶି ।
ଅଣ୍ଟି ଧାନ ନେଇ କୋଠିରେ ଥୋଇଣ ବାରତା ପୁଚ୍ଛନ୍ତି ଆସି ।।
ବୋଇଲେ ବାପ ମନ ମଧ୍ୟରେ ତାପ ପାଉଅଛ କିମ୍ପା ତୁମ୍ଭେ ।
ଚାହିଁ ନ ପାର ଯେ ବିମୁଖ ହୋଉଛ କୁବେର ଅଟୁଟି ଆମ୍ଭେ ।।
ଦେଖିଣ ମାରୁତି ହୋଇଣ ଦ୍ରୁପତି ବୋଇଲେ ଶୁଣ କୁବେର
କନକପୁରର ଅଧିକାରୀ ହୋଇଣ ଏତେ ଦୁଃଖ କିମ୍ପା ତୋର ।
ଭୀମ ବଚନେ ଧନପତି ବୋଇଲେ ଯାହା ପୁଚ୍ଛିଲ ହେ ତୁମ୍ଭେ ।
ଶ୍ରୀ ଜଗନ୍ନାଥଙ୍କ କୋଠ ଭଣ୍ଡାର ଏ ରକ୍ଷାପାଳ ଯିନା ଆମ୍ଭେ ।।

ଦିବ୍ୟ ବସନ ପାଣି ଦ୍ରବ୍ୟମାନଙ୍କେ ସବୁରି କାଟେରେଣି ଅଛି ।
ଯେତେବେଳେ ଯାହା ଲୋଡ଼ା କରନ୍ତି ସେ ଗ୍ରାମୁରେ ନେଇ ତା ଖଟି ॥
ଶ୍ରୀ ଜଗନ୍ନାଥଙ୍କ ଯାହାଙ୍କୁ କରୁଣା ତାହାଙ୍କୁ ଦିଅନ୍ତି ଦ୍ରବ୍ୟ ।
ବିନା ଆଜ୍ଞାରେ ତିରଣ ନ ହଲଇ ସମ୍ଭାଳି ଥାଇ ମୁଁ ସବ ॥
ସ୍ଥାବର ଜଙ୍ଗମ କୀଟ ପତଙ୍ଗାଦି ଯାହାଙ୍କୁ ଯେମନ୍ତ ଦାନ ।
ଏହି ଭଣ୍ଡାରୁ ପନ୍ତ-ଆଜ୍ଞା ହୁଅଇ ଶୁଣ ତୁ ଯୁଧିଷ୍ଠି ସାନ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ତିନିପୁରେ ଯେତେକ ପଦାର୍ଥ ସାର ।
ବନ୍ଧିଲେ ଦ୍ରବ୍ୟ ତିଳେହେଁ ନ ସରଇ ଅଛିଦ୍ର କୋଠଭଣ୍ଡାର ॥
ଦେବାଧିଦେବଙ୍କ ଉପରେ ଠାକୁର ଶ୍ରୀ ଜଗନ୍ନାଥ ଗୋସାଇଁ ।
ତାହାଙ୍କ ବିନୁ ଏ ଭଣ୍ଡାର ପଦାର୍ଥେ ଆନେ ଅଧିକାର ନାହିଁ ॥
ରାଜା ପରଜା ଚରାଚର ପ୍ରାଣୀଙ୍କି ଯାହାକୁ ଯେତେକ ଲେଖା ।
ବରାଦ ହୁଅଇ ଆଦେଶ ପାଇଁ ପ୍ରଭୁ ହୋଏ ତନଖା ॥
ସେ ଧନ ଯେ କେହି ପଢ଼ି ନ ପାଇଣ କରିଥାଇ ଉପବାସ ।
କୋଠ କରଣ ଦଣ୍ଡ ମଣ୍ଡ ହୁଅଇ ଠାକୁରଙ୍କ ମନେ ତ୍ରାସ ॥
ସ୍ଥାବର ଜଙ୍ଗମ ଯେ କୀଟ ପତଙ୍ଗ ସବ ଘଟେ ପ୍ରାଣ ମଣି ।
ଶ୍ରୀ ଜଗନ୍ନାଥଙ୍କ ଚରଣେ ଶରଣ ଦୀନକୃଷ୍ଣ ଦାସ ଭଣି ॥

---

ବିଷ୍ଣୁ ମାୟାଧର ମହିମା ଅପାର କେ ଜାଣିବ ତାଙ୍କ ମାୟା ।
ଥିଲା ଲୋକଙ୍କରେ କୃପଣ ପଦାର୍ଥ ନ ଥିଲା ଲୋକଙ୍କୁ ଦୟା ॥
ଧନପତି ବାଣୀ ଏସନକ ଶୁଣି ଭୀମସେନ ପୁଚ୍ଛା କରି ।
କାହାର ପଦାର୍ଥ କେମନ୍ତ ପ୍ରକାରେ କାହାକୁ ଦିଅନ୍ତି ହରି ॥
ପ୍ରକୃତ କାରଣ କରନ୍ତୁ ଶ୍ରବଣ ଏହି ମୋର ନିବେଦନ ।
କୁବେର ବୋଲଇ ସାବଧାନେ ଶୁଣ ଯୁଧିଷ୍ଠିଦେବଙ୍କ ସାନ ॥ ଶ୍ରୀ
ତୁମ୍ଭେ ବୋଇଲ କାହା ଦ୍ରବ୍ୟ କାହାକୁ କେମନ୍ତେ ଦିଅନ୍ତି ହରି ।
ସେ କଥା ତୋ ଆଗେ ବିସ୍ତାରି କହିବା ବୁଝିବାକୁ ଭଲ କରି ॥
ଦେବପୁର ବୋଲି ଏକଇ ଶାସନ କୁଶଧର ନାମେ ରାଜା ।
ଦଶ ସହସ୍ର ଘର ଯେ ତହିଁ ଅଛି ସବେହେଁ ବିପ୍ର ପରଜା ॥
ଅଠରକୋଶ ମାଡ଼ିଣ ସେହି ଦେଶ ବସିଅଛି ସେହି ଗ୍ରାମ ।
ବ୍ରାହ୍ମଣ ଜଣେ ସେ ଶାସନରେ ଅଛି କୃପଣ ପଣ୍ଡା ତା ନାମ ॥

କାଉ ବୃଦ୍ଧି ଭାର ବହୁତ ବିସ୍ତାର ଧନ ସମ୍ପଦ ଅନେକ ।
ଋଣ ଦେଢ଼ି ଧାନ ସୁନା ରୂପାମାନ ଦେଇଥାଇ ରାଜ୍ୟ ଯାକ ॥
ଧନ ସଞ୍ଚୟେ କଷ୍ଟେ ଦେଇ ଚିତ୍ତ ଅନବ୍ରତ ବୁଲୁଥାଇ ।
ମାସକୁ ମାସ କଳାନ୍ତର ସାଧଇ ଖାତକ ଘରକୁ ଯାଇ ।
କଉଡ଼ିଠାରେ ଉପ୍ରୋଧ ନାହିଁ ତାର ଥିଲା ନ ଥିଲା ନ ଜାଣେ ।
ଟଙ୍କା ମୁଣ୍ଡରେ ଗୃହପଣ ଘେନଇ ଧାନ ଦେଢ଼ି ପରମାଣେ ॥
ଧର୍ମଶାସ୍ତ୍ର କେବେ ଶ୍ରବଣେ ନ ଶୁଣେ ଜୀବରେ ନ ଥାଏ ଦୟା ।
ସମ୍ପତ୍ତି ପଟଳେ ନରନ୍ତରେ ଭୋଳେ ଘୋଟିଅଛୁ ବିଷ୍ଣୁ ମାୟା ॥
ଦରିଦ୍ରଲୋକ ମାଗିଲେ ନ ଦଅଇ ଭିଖାରୀଙ୍କି ନ ଦିଏ ଅନ୍ନ ।
ମୁଖରେ ସତ କେବେହେଁ ନ କହଇ ବିଫଳ କଲାକ ଜନ୍ମ ॥
ଦେବତା ବିପ୍ରଙ୍କୁ ଭକତି ନ କରେ ପୂଜା ନ କରେ ଅତିଥି ।
କର୍ମ ଧର୍ମମାନ ସମସ୍ତ ତେଜିଣ ଧନମଦେ ଥାଇ ମାତି ॥
ପୁତ୍ର ଦୁହିତା ଗୋଟିଏ କେଲେ ନାହିଁ ଅପୁତ୍ରିକ ଦ୍ୱିଜ ଗୋଟି ।
ଗୁରୁକଣ୍ଠ ଆଉ ବେଳହୁଁ ନୋହିଲା ସନ୍ଥ ଚରଣେ ନ ଖଟି ॥
ଏମନ୍ତେ ଏକଦିନେ ସେ ଦ୍ୱିଜବର ଗୋଜାପତ୍ର ଘେନି କର ।
ଖାତକଠାରୁ ଋଣ ସାଧି ଯିବାକୁ ଘରୁ ହୋଇଲା ବାହାର ॥
ମନରେ କୋପ କରିଣ ମହାଦର୍ପେ ଘରୁ ବାହାର ହୁଅଇ ।
ଦୂରଦେଶକୁ ଗମନ କଲା ବିପ୍ର ସଖା ସଙ୍ଗେ କେହି ନାହିଁ ॥
ଅଗମ୍ୟ ଘୋର ଗହନ ବିପିନରେ ବହୁତ ପଥ ଅଇଲା ।
ଦେବଗିରି ବୋଲି ଏକଇ ପର୍ବତ ନିଶାରେ ତହିଁ ରହିଲା ॥
ମନୁଷ୍ୟମାନଙ୍କ ଲେଶ ନାହିଁ ପାଶ ଖୋଜି ନ ପାଇଲା କାହୁଁ ।
ଗିରିବର ଶିଖ ଉପରେ ଦେଖିଲା ସୁବର୍ଣ୍ଣ ମଣ୍ଡପେ ଅଛୁ ।
ମାଣିକ୍ୟ ଖଞ୍ଜା ମୁକୁତାହାର ତହିଁ ମର୍କତର ସ୍ତମ୍ଭମାନ ।
ରୂପାର ବତା ସୁବର୍ଣ୍ଣ ଭାଣ୍ଡ ଶ୍ରେଣୀ ଲାଗିଅଛୁ ଭିନ୍ନ ଭିନ୍ନ ॥
ଶ୍ୱେତ ଚାମର ମଣ୍ଡଣି ତା ଉପରେ ପଟାନ୍ତର ନାହିଁ ମଞ୍ଚ ।
ପଦ୍ମଜାତି ଖଞ୍ଜା ଉପରେ ଲାଗିଛୁ ଦେଖିବାକୁ ଦିବ୍ୟ ସଞ୍ଚ ॥
ସୁବର୍ଣ୍ଣର ଢାଳ ଅତି ପରିମଳ ମୁଁ ଜଳ [illegible]ବ ଆଉ
ମିଥୁନ ମାସେ ବିଜୁଳି ପ୍ରାୟେ ତେଜ ଦିଶୁଥାଇ [illegible] ॥

କୋଟି ବଦ୍ଧାଣି ଯେଉଣ ବିଶ୍ୱକର୍ମା ନିର୍ମାଣିଛୁ ଅନୁପମ ।
ତେତିଶକୋଟି ଦେବତା ସଙ୍ଗେ ଯେଉ ବିଜୟେ ପୁରୁଷୋତ୍ତମ ॥
ସ୍ୱର୍ଗ ମର୍ତ୍ତ୍ୟ ତିନିଭୁବନ ଲୋକରେ ପଡ଼ିଲା ହିସ୍ମୟମାନ ।
ଏହିକ୍ଷଣି ଆସ ଗୋପପୁର ଯିବା ଦେଖିବାକ ଦିବ୍ୟ ସ୍ଥାନ ॥
କୋଠ କରଣକୁ ସ୍ୱାମୀଙ୍କୁ ହକାରି ବୋଇଲେ ଜଗତପତି ।
କାଲି ପଡ଼ି ସ୍ୱତ କେମନ୍ତ ପ୍ରକାରେ ଜୀଏ ସେ ପାଇ ନାହାନ୍ତି ॥
ପ୍ରଭୁ ବୋଇଲେ ତିନପୁର ଲୋକରେ ପଡ଼ି ନ ପାଇଲେ ଯେତି ।
ତଳପରେ ତାଙ୍କ ନାମ ବସାଅ ଯେ କେମନ୍ତ ପ୍ରକାରେ ସେତି ॥ ଛି
କେତେ କେତେ ଧର୍ମ କେତେ କେତେ କର୍ମ କେମନ୍ତ ପ୍ରକାରେ ସେବା ।
କାମ କ୍ରୋଧ ହିଂସା ଦୟା କ୍ଷମା କେତେ ଏ କଥାମାନ ବୁଝିବା ॥
ଶୁଣି କରଣ କରପଦ ଯୋଡ଼ିଣ ଜଣାଇଲେ ମହାବାହୁ ।
କେଉଁ ଭକତ କଥା ଆଗେ କହିବ ଶ୍ରୀମୁଖରେ ଆଜ୍ଞା ହେଉ ॥
ପ୍ରଭୁ ବୋଇଲେ ପାତାଳ ଭୁବନରେ ଯେଉଁ ଦୁଇ ଭକ୍ତ ଛନ୍ତି ।
ତାହାଙ୍କ କଥା ଆଗ କରି କହ ଯେ କି କି ବୃତ୍ତି କରୁଥାନ୍ତି ॥
କେବଣ କୁଳେ ଜନମ ହୋଇଛନ୍ତି କେଉଁ ବିଷୟେ ସରାଗ ।
ପ୍ରତିବିଧି କରି ଏ କଥା ଆମ୍ଭଙ୍କୁ ବୁଝାଇ କହ ତୁ ଆଗ ॥
ପ୍ରଭୁଙ୍କ ବଚନେ କରଣ ବୋଇଲା ଶୁଣିମା ପୁରୁଷୋତ୍ତମ ।
ସତ ମହତ ବୋଲିକରି ଗୋସାଇଁ ସେ ଦୁଇଭାଇଙ୍କ ନାମ ॥
ଔଷକୁଳେ ଜାତ କୁଟୁମ୍ବ ପୋଷନ୍ତି ନାନାଦୁଃଖ କଷ୍ଟେ ପଡ଼ି ।
କଣ୍ଟକ ମଡ଼ା ଦୁଇଭାଇ କାଢ଼ନ୍ତି ଜାତିରେ ଅଟନ୍ତି ହାଡ଼ି ॥
ଦୁଃଖ ସୁଖ ବେଷ୍ଟା ଅତିଥି ଦିଅନ୍ତି ଭକତଭାବକୁ ହିତ ।
ଛନ୍ଦମନ୍ଦ ମାୟା ହୃଦୟେ ନ ଆଇ ପାଦପଦ୍ମେ ଏକା ଚିତ୍ତ ॥
ବିଷ୍ଣୁ ଭକ୍ତିରେ ବିଶ୍ୱାସ ଥିବା ଲୋକଠାରେ ତାହାଙ୍କର ପ୍ରୀତି ।
ଧର୍ମ କଥାକୁ ଆଗଭରି ହୋଇଣ ନ କରନ୍ତି ଅହଙ୍କାରି ॥
ଏମନ୍ତେ ଏକଦିନକେ ବେନିଭାଇ ନାମକୀର୍ତ୍ତନେ ପଶିଲେ ।
ହରିନାମାମୃତ ରସ ସ୍ୱାଦ ପାଇ ପାଦପଦ୍ମରେ ରସିଲେ ॥
କୁଟୁମ୍ବଙ୍କ କଥା ରୋଗ ଶୋକାବସ୍ଥା ସମସ୍ତ ପାସୋରିଲେ ।
ଏକଦିନେ ସେହି କଣ୍ଟକ ମଧ୍ୟରେ ବିଦେଶୀ ଗୋଟିଏ ମଲା ॥

ନଗ୍ର ଦଣ୍ଡୁ ଆସି ବୁଲି ବୁଲି ଆସି ଦେଖିଲା ତା ବେଣନଜୋଲେ ।
ଦଇବେ ସେ ଯେ ଆଗି ନମାଖି ଲୋକ ସିନା ପଡ଼ିଛନ୍ତି ମଣ୍ଡପ ତଳେ ॥
ତହୁଁ କଟୁଆଳ କୋପେ ଅନର୍ଗଳ ପାରୁଣ ଲୋକଙ୍କୁ ରାଇ ।
ବୋଇଲା ବେନ ଖାଇଙ୍କର ବର୍ତ୍ତିନ ତଳପ ଦିଅ କଟାଇ ॥
ନଗ୍ର ଭିତରେ ମୃତପିଣ୍ଡ ପଡ଼ିଲା ନ ଲଗିଲା ତାଙ୍କୁ ଛନ୍ଦ ।
ନରନ୍ତରେ ଏବେ କର୍ତ୍ତିନେ ପଶିଲେ ସେବାକୁ କାହୁଁ ଛୁ ମନ ॥
ଏତେ ବିପ୍ରର ହୃଦରେ କୋପ ଭରି ଧାଡ଼କାରେ ଗଲା ଉଠି ।
ମନ୍ତ୍ରି ଭାତ ତାଙ୍କୁ କିଛୁହିଁ ନ ଦେଲେ କରଣ ତଳପୁ କାଟି ॥
ଘର ଦୁଆର ସହିତେ ତାହାଙ୍କର ଭସ୍ମ କରି ହାଦେ ଦେଲା ।
ଦୁଃଖେ ପଦାର୍ଥ ଯେତେକ ସଞ୍ଚିଥିଲେ ସବୁ ତା ଆପଣେ ନେଲା ॥
ଦାଇବେ ସେ ଯେ ସେବକ ଲୋକ ସିନା ନ ପାଇଲା କିଛୁ ବୋଲି ।
ତେଣୁକରି ବେନ ଖାଇଙ୍କ କୁଟୁମ୍ବ ଉପାସେ ଶୋଇଲେ କାଲି ॥
ଏସନ ବାଣୀ ଶୁଣିଣ ଚକ୍ରପାଣି ଗ୍ରହିଁଲେ ବାସୁକୀ ମୁଖ ।
ବୋଇଲେ ତୁ ଯେ ଜ୍ଞାନବନ୍ତ ହୋଇଣ ମୋ ଭକ୍ତକୁ ଦେଲୁ ଦୁଃଖ ॥
ପାତାଳ ପୁରେ ତୁ ନୃପତି ହୋଇଣ ଏମନ୍ତ ଅଧର୍ମ କଲୁ ।
ଯେତେବେଳେ ଭକ୍ତ ଉପାସେ ଶୋଇଲା ସଙ୍ଘୋଳା କମ୍ପା ନ କଲୁ ॥
ଚୌର ଚଣ୍ଡାଳ ଜୀବଜନ୍ତୁ ସହିତେ ଦୁଃଖ ସୁଖ କର୍ମଭାଗୀ ।
ରାଜ୍ୟରେ ଯେତେ ପାପ ପୁଣ୍ୟ ହୋଇବ ନୃପତିଙ୍କି ସବୁ ଲାଗି ॥
ପର୍ବତ ଗୁମ୍ଫା କାନନ ଭିତରେଣ ବରଷନ୍ତି ଯେତେ ଜଳ ।
ସେ ପୁଣ ଯାଇ ଯେମନ୍ତ ପ୍ରକାରରେ ସମୁଦ୍ରେ ହୁଅଇ ଠୁଳ ॥
ସେହି ପ୍ରକାରେ ପାପ ପୁଣ୍ୟ ସହିତେ ଭଲ ମନ୍ଦାଦି ଦାରିଦ୍ର୍ୟ ।
ନୃପତି ଶିରେ ସବୁ ଆସି ବସଇ ଏହା ଜାଣନ୍ତି ସମସ୍ତ ॥
ଏ ତୋର କଟକ ଭିତରେ ମୋହର ଭକତ ଧ୍ୟାନ ଭାଙ୍ଗିଲା ।
ଧର୍ମଶାସ୍ତ୍ର ପରମାଣରେ ପାତକ ଥୋକାଏ ତୋତେ ଲାଗିଲା ॥
ବହନ ହୋଇ ଏବେ ତୁହି ଯାଇଣ ମିଳିବୁ ତାହାଙ୍କ ପାଶ ।
କୋଟି ସମ୍ପଦ ଯେ ତୁମ୍ଭୁରେ ଥୋଇଣ ବୋଲିବୁ ଉପେକ୍ଷ ଦୋଷ ॥
ତେବେ ତୋ ଜନମ କରମ ସୁଫଳ ହୋଇବ ନୃପତିମଣି ।
ଭକତର ମୋର ଭିନ୍ନାଭିନ୍ନ ନାହିଁ ଅନ୍ତର୍ଗତେ ଥିବୁ ଜାଣି ॥

ଦେବ ଦାନବ ନାଗଲୋକ ମାନବ ମଲେ ଯେ ମରଣ ମେର
ବାସୁଦେବ ପ୍ରାପ୍ତ ତାହାଙ୍କୁ ମଣିବୁ ଶୁଣ ତୁ ହୋ ନୃପବର ॥
ଏମନ୍ତ କହୁ ଯେ କରୁଣାର ସାଇଁ ପେଡ଼ିଲେ ଭକତ ଚିନ୍ତା ।
ଇନ୍ଦ୍ର ଦେବତାଙ୍କୁ ଅନାଇ ବୋଇଲେ ସ୍ୱର୍ଗର କସ ବାରତା ॥
ତୁହୁ ସୁରସସ୍ତ ନ କର ହୋ ଭୟୁ ଇନ୍ଦ୍ରପଦ ବସୁ ଠିକେ ।
ଦେବତାଙ୍କ ଖେଳ ପଡ଼ିଆ ହୋଇଲ୍ ସଙ୍ଗୋଲା ନ କଲୁ କେ ॥
ସ୍ୱର୍ଗପୁର କଥା ଯେ ଲୋକ ବ୍ୟବସ୍ଥା ତୋତେ ଦେଇଅଛୁ ପୁଣ ।
କାଲି କାହାକୁ ପଡ଼ି ଉଣା ହୋଇଲା କହିଲ କୋଠକରଣ ॥
ପ୍ରଭୁଙ୍କର ବାଣୀ ଦେବ ଇନ୍ଦ୍ର ଶୁଣି ମଥାରେ ଯୋଡ଼ିଲ ହସ୍ତ ।
ବୋଇଲ ମୋର ଅପ୍ରାଧ କ୍ଷମା କର ଅଶେଷ ବ୍ରହ୍ମାଣ୍ଡନାଥ ॥
ଆଜଠାରୁ ସ୍ୱର୍ଗପୁର ବିଷୟରେ ସାବଧାନ ରହିଥିବ ।
କାଲି ଯାହାକୁ ବଖୋଗ ନ ଖଟିଲ ଶତେଗୁଣ ତାଙ୍କୁ ଦେବ ॥
ଶୁଣି ଗୋବନ୍ଦ ମନେ ମହା ସାନନ୍ଦ ଫୁରୁଣା ହୋଇଲ ଦେହ ।
କୋଠକରଣକୁ ଅନାଇ ବୋଇଲେ ମର୍ତ୍ତ୍ୟପୁର କଥା କହ ॥
ପ୍ରଭୁଙ୍କର ବାଣୀ ଏସନକ ଶୁଣି କହିଲ କୋଠକରଣ ।
ବୋଇଲ ପ୍ରଭୁ ମର୍ତ୍ତ୍ୟପୁର ବାରତା ସାବଧାନ ହୋଇ ଶୁଣ ॥
ବେଦପୁର ନାମେ ଏକଇ ଶାସନ କୁଶଧର ନାମେ ରାଜା ।
ଦଶସହସ୍ର ଘର ତହିଁରେ ବସଇ ସକଳେ ବିପ୍ର ପରଜା ॥
ଅଠରକୋଶ ମାଡ଼ିଣ ସେହୁ ଦେଶ ବସିଅଛି ମହାଗ୍ରାମ ।
ବ୍ରାହ୍ମଣ ଜଣେ ସେ ଶାସନରେ ଅଛୁ କୃପଣ ପଣ୍ଡା ତା ନାମ ॥
ସମ୍ପଦ ତାହାର ଅଛହିଁ ବିସ୍ତାର କେ ଅନ୍ତ କରିବ କାହିଁ ।
ଋଣବାଧି କରି ଯେତେକ ପଦାର୍ଥ ସବୁଠାକୁ ଅଛୁ ନେଇ ॥
ଘର ତାହାର ଯେ ଅଛହିଁ ବିସ୍ତାର ବାଡ଼ି ଚଉକଠ ପଞ୍ଚ ।
ନାନାବର୍ଣ୍ଣ ପୁଷ୍ପ ତହିଁରେ ଲଗିଛୁ ଏକକୁ ଆରେକ ଘଞ୍ଚ ॥
ଯୁଇ ଯାଇ ମଲ୍ଲୀ ସେବତି କରୁଣା ତଗର ତରାଟ ମୂଳେ ।
ବୃକ୍ଷ ଗୋଟିକେ ଭିନ୍ନ ଭିନ୍ନ ଚଉରା ନିର୍ମାଣ କରିଛୁ ଠୂଳେ ॥
ଚାରିକଡ଼େ ବାଡ଼ ଦେଇଅଛୁ ଚାଡ଼ି ଆବରଣ ଚଉକଠ ।
ହରିଭକ୍ତ ନାମେ ଏକଲ ମାଲିଆ ରକ୍ଷା କରଇ ତା ଜଠ ॥

ସୁସେବା କରଣ ଥ ଇ ଆବୋରଣ ବେଳ ଜାଣି ଦିଏ ପାଣି ।
ନିତିକି ନିତି ମୂଲ ମାଗି ନଅଇ କୁଟୁମ୍ବ ବେନି ପରାଣୀ ॥
ଅନ୍ନ ବସ୍ତ୍ର ଦୁଇ ସଂଯୋଗ ନୁହଇ କେତେହେକ ଦିନ ଗଲା ।
ଦଇବେ ଦୁଃଖୀ ମୂଲିଆ ଲୋକ ସିନା ଦେହ ତା ଅସୁସ୍ଥ ହେଲା ।
ବିଷମ ଜ୍ୱରରେ ଉଠି ନ ପାରିଲେ ହୋଇଲେକ ହନ୍ତସନ୍ତ ।
ଅନ୍ନ ବ୍ୟଞ୍ଜନ କିଛିହେଁ ନ ମିଳିଲା ମୂଲିଆ ଘର ଯେମନ୍ତ ।
ପଥ୍ୟ ସରଞ୍ଜାମ ନୋହିଲେକ ଯୋଗ ବ୍ୟାଧିକଷ୍ଟେ ମହାଦୁଃଖୀ ।
ଫୁଲ ତୋଟାରେ ପାଣି ଦିଆ ନୋହିଲା ବୃକ୍ଷମାନେ ଗଲେ ଶୁଖି ॥
ବ୍ୟାଧିର ଯେ ତାପ ଅତିହେଁ ଅମାପ ନ ପାରିଲା ଦୁଃଖ ପଡ଼ି ।
ପିଣ୍ଡରୁ ପ୍ରାଣ ମହାଗରୁ ଲାଗିଲା ଜୀବନ ଯାଉଛି ଉଡ଼ି ॥
କର୍ମ ବେଭାର ନିତ୍ୟାଚାର ସମସ୍ତ ନ କରି ପାଇଲା ଶୋକ ।
ପାଦପଦ୍ମ ସେବା ପଡ଼ିଆ ହୋଇଲା ବେଢ଼ରେ ଭକତ ଲୋକ ॥
ଗେରସ୍ତ ଯେ କାର୍ଯ୍ୟ କରି ନ ପାରିଲା ତୋଟାରେ ମରୁଛି ଫୁଲ ।
ଆପଣେ ଯହୁଁ ଅଶକତ ହୋଇଲା ବ୍ରାହ୍ମଣ ନ ଦେଲା ମୂଲ ॥
ଦଇବେ ବିପ୍ର ଯେ ଅତ୍ୟନ୍ତ କଠୋର ନିର୍ଦ୍ଦୟ ଗୃଣ୍ଡାଳ ଚିତ୍ତ ।
ବୋଇଲା ଏ ଯେବେ ଆଡ଼ତି ନ କଲା କାହିଁ ପାଇଁ ଦେବି ଭାତ ॥
ପାପ ପୁଣ୍ୟ ଦୁଇ ବିଚାର ନ କରି ନିରାଶ କଲାକ ଯେଣୁ ।
ହରି ଭକତକୁ କିଛି ନ ମିଳିଲା ଉପାସେ ଶୋଇଲା ତେଣୁ ॥
ନିରାଶ ହୋଇଣ ଉପବାସେ ଶୋଇ ପାଦ ପଦ୍ମେ ଚିତ୍ତ ଦେଇ
ଅତି ଆତଙ୍କେ ସେ ଦୁଃଖରେ ଡାକିଲା ଦୀନବନ୍ଧୁ କରି ତ୍ରାହି ॥
କରଣର ବାଣୀ ଏସନେକ ଶୁଣି ଆଜ୍ଞା ଦେଲେ ଚକ୍ରଧର ।
ବୋଇଲେ ଏ ଦୋଷ କାହାକୁ ଲାଗିଲା ସମସ୍ତେ ବିଚାର କର ॥
ପ୍ରଭୁଙ୍କର ବାଣୀ ଏସନେକ ଶୁଣି ବୋଇଲେ ଦେବତାଗଣେ ।
କୃପଣ ପଣ୍ଡାକୁ ଏ ଦୋଷ ଲାଗିଲା ଧର୍ମଶାସ୍ତ୍ର ପରମାଣେ ॥
ଶୁଣିଣ ଶ୍ରୀହରି ମନେ ତାପ କରି କରଣ ମୁଖରୁ ଶୁଣିହେଁ ।
ବୋଇଲେ ସମସ୍ତେ ଝଙ୍କା ବେଗେ ଦିଅ ହରି ଭକତକୁ ନେଇ ॥
ସେ ଯେ ଆମ୍ଭର ନୁହଇ ପରାପର ଯେସନେକ ପିତାପୁତ୍ର ।
ମୋ ଭାବ ଜାଣେ ସେ ତା ଭାବ ମୁଁ ଜାଣେ ଏକ ଜାତି ଏକ ଗୋତ୍ର ॥

ଯେ ଯେ ଦୁଃଖ ପାଇ ହୃଦେ ଚିନ୍ତା କରି ମନେ ସୁମରିଲା ମୋତେ
କୋଠ ଭଣ୍ଡାରୁ ସହସ୍ରେ ଟଙ୍କା ତାଙ୍କୁ ବେଗେଣ ହୁଅ ପ୍ରଭାତେ ।।
ଏଇବେ ତାର କୁଟୁମ୍ବ କେବଳ ପ୍ରାଣୀ ଅଧିକ ନାହିଁ ନା ଆଉ ।
ସରିଲେ ପୂଜିତ ଆଉ ଦେଇ ପାରୁ ଏତେକ ଏବେ ସେ ଖାଉ ।
ପ୍ରଭୁଙ୍କ ବଚନେ ଚୈତନ୍ୟ କରଣ ମଥାରେ ଯୋଡ଼ିଲା ହସ୍ତ ।
କାଲି ପ୍ରଭାତରେ ଏ ଟଙ୍କା ତାହାକୁ ଅବଶ୍ୟ ହେବ ପ୍ରାପତ ।।
ଶୁଣିଣ ଶ୍ରୀପତି ହରଷ ମନରେ ଆସ୍ଥାନୁ ଉଠିଲେ ଧାଇଁ ।
ଯେ ଯାହା ପୁରକୁ ବୃନ୍ଦାରକେ ଗଲେ ଶୁଭେଣ ପହିଲା ରାତି ।।
ସେ ଧନର କଥା ଯେତେକ ବ୍ୟବସ୍ଥା କହିଲେ ଦେବତାଗଣ ।
ମଣ୍ଡପ କଣରେ ଥାଇ ତା ଶୁଣନ୍ତି କୃପଣ ପଣ୍ଡା ବ୍ରାହ୍ମଣ ।
ଅନ୍ତର୍ଗତେ ତାର ବସ୍ତର ହୋଇଲା ସୁଫଳ ହୋଇଲା କାର୍ଯ୍ୟ ।
ସହସ୍ରେ ଟଙ୍କା ଯେ ହରିଭକତକୁ ପ୍ରାପତ ହୋଇବ ଆଜ ।।
ସେ ଧନକୁ ଯାଇ ଯେନବଇଁ ମୁହିଁ ଉପାଧି ବୁଦ୍ଧି ପ୍ରକାରେ ।
ଋଣ ଦେଲା ଦ୍ରବ୍ୟ ପଛେନ୍ତେ ସାଧିବ ଥାଉ ମୋ ଖାତକଠାରେ ।।
ଏସନନ୍ତ ବାଣୀ ମନେ ଗୁଣି ସେଠାରୁ ବାହାର ହୋଇ ।
ରବି ଅସ୍ତକାଳେ ନିଜର ଗୃହରେ ପ୍ରବେଶ ହୋଇଲା ଯାଇ
ଦେବଙ୍କର କଥା ବାରତା ସମସ୍ତ ଭାରିଯାକୁ କହି ଦ୍ୱିଜ ।
ବୋଇଲା ବିଧାତା ପୁରୁଷ ଆମ୍ଭଙ୍କୁ ଅନୁଗ୍ରହ କଲେ ଆଜ ।।
କାଲି ମୁଁ ଗଲି ମଣ୍ଡପଠାରେ ପର୍ବତ ଶିଖରେ ଯାଇଁ ।
ସ୍ୱର୍ଗରୁ ଆସି ଦେବତାମାନେ ଯେ ଗୋଷ୍ଠି କରିଥିଲେ ତହିଁ ।।
ଥିଲା ନ ଥିଲା ଯେ ଉପବାସ କଥା ବସ୍ତର ବୁଝିଲେ ବେଗି ।
ପଢ଼ି ଭାତମାନ ଲେଖି ଦେଇଥିଲେ ଯାହାକୁ ଯେମନ୍ତ ଲାଗି ।।
ଆମ୍ଭର ମୂଳିଆ ଦୁଃଖ ଯେ ମାଇଲା ସମସ୍ତ ବୁଝିଲେ ଭଲ ।
କୋଠକରଣ ଯେ ଶ୍ରୀମୁଖେ କହିଲା ଏ କଥାହିଁ ପଢ଼ିଗଲା ।।
ଦୁଃଖର କଥା ଯେତେ ଯେତେ ବ୍ୟବସ୍ଥା ବୁଝିଲେ ସକଳ କାର୍ଯ୍ୟ ।
ସହସ୍ରେ ଟଙ୍କା ପଢ଼ିଭାତ ତାହାକୁ ବରାଦ ହୋଇଛି ଆଜ ।।
ଏହି କଥା ଶୁଣି ମନରେ ମୁଁ ଗୁଣି ଅସ୍ଥିର ହୋଇଲି ଦେହ ।
ଆଜ ରାତେ ଧନ ପ୍ରାପତ ହୋଇବ କି ବୁଦ୍ଧି କରିବା କହ ।।

ତିନ୍ହିଁ ପାଇଁ ମୁହିଁ ଅଛଳଇଁ ଧାଇଁ ତୁହ୍ମତ ଶୁଣିଲି ଏବେ ।
ମୋହ୍ର ବୁଦ୍ଧି ବଳ ତୋ ଆଗେ କହିବ ନାସ୍ତି ନ କରିବୁ ଯେବେ ॥
ଗୋରକ୍ଷର ବାଣୀ ସେ ବ୍ରାହ୍ମଣୀ ଶୁଣି ମନରେ ଲଭିଲା ତୋଷ ।
ବୋଇଲା କେମନ୍ତ କି ବୁଦ୍ଧି କରିବ କହ କିନା ମୋର ପାଶ ॥
ବିପ୍ର ବୋଇଲା ମୁଁ ଯାହା ଭିଆଇଛୁ ବେଗେ ତୁ ଶୁଣ ଗୋ ସଖି ।
ଆଜକ ମାତ୍ର ସେ ଘର ଗୃହସ୍ଥ ନ ଲଞ୍ଚ କରିବା କି ଦେଖି ॥
ମୋହ୍ର ମନକୁ ତ ଏମନ୍ତ ଆସଇ ତୁହ୍ମର କେମନ୍ତ ଭାବ ।
ଛନଶ ଟଙ୍କା ତାହ୍ନାକୁ ଲଞ୍ଚ ଦେବା ସେ କାମ୍ୟ ଆଉ କହିବ ॥
ଏକା ଗୃହକେ ଏତେ ଧନ ପାଇବା ଆହ୍ମଙ୍କୁ ଅଛି କି ହାନି ।
ବ୍ରାହ୍ମଣୀ ବୋଇଲା ତାହ୍ନାଠାରୁ ଦେଖି ଆସ କିନା ବୋଲି ଦେନି ॥
ଘରଯାର ବାଣୀ ଏମନ୍ତ ଶୁଣି ବ୍ରାହ୍ମଣ ଚଳିଲା ଖରେ !
ତତକ୍ଷଣେ ଯାଇ ପ୍ରବେଶ ହୋଇଲା ହରି ଭକତଙ୍କ ଘରେ ।
ତା ଦ୍ବାରରେ ବସି ବୋଇଲା ଆଶ୍ବାସି କି କରୁଛ ଆଜ ତୁହ୍ମେ ।
କାଲି ଖତପାଣି ନାହିଁ ଭିଆଇଲି ସଙ୍ଘୋଳି ଅଇଲୁ ଆହ୍ମେ ।
ତୁହ୍ମର ଏ ଦୁଃଖ ଦେଖିଣ ବିମୁଖ ହୃଦୟେ ପାଇଲୁଁ ତାପ ।
ମନରେ ମହାଉଚ୍ଛାଟ ଲଗିବାରୁ ସଙ୍ଘୋଳି ଅଇଲୁ ବାପ ॥
ଗୋଟିଏ ମୋହର ଅଛଇ ଯେ ବିଚାର ଶୁଣିଲେ କହିବ ତୋତେ
ଆଜ ରାତିକ ଏହି ଘର ଖଣ୍ଡିକ ମୂର୍ଚ୍ଛି ପାରିବୁ କି ମୋତେ ॥
ପାହିଲାରୁ ନଶି ଚହିବୁ ତୁ ଏଥି ମନରେ ନ କର ଶଙ୍କା ।
ଏଥିକୁ ଆହ୍ମେ ଖରଚ ଦେବା ତୋତେ ଲେଖାରେ ଛନଶ ଟଙ୍କା ॥
ବ୍ରାହ୍ମଣର ବାଣୀ ଏମନ୍ତ ଶୁଣି ବୋଇଲା ହରି ଭକତ ।
ଏତେ ଧନ ମୋତେ କେମନ୍ତେ ଦେବୁ ତୁ ପ୍ରତେ ଯାଉନାହିଁ ଚିତ୍ତ ।
ଜରର ତାପେ ମୁଁ କାର୍ଯ୍ୟ ନ କଲିବୁ ପଡ଼ିଆ ହୋଇଲି ବୋଲି ।
ଘନେ କରି ମୂଲ ଆଗତ ନ ଦେଲୁ ଉପାସେ ଶୋଇଲି କାଲି ॥
ମୂଲ ଲାଗି ତୋତେ ମାଗିଣ ଗଲି ଯେ ମୁଖ କଲୁ ଅଷ୍ଟ ବଙ୍କା ।
ଏବେ ତୁ କେମନ୍ତ ପ୍ରକାରେ ମୋତେ ଯେ ଦେବୁ ଛନଶତ ଟଙ୍କା ॥
ବିପ୍ର ବୋଇଲା ମୁଁ ନିଶ୍ଚୟ କରିବ ଏବେ ତୁ ପରତେ ଯାଅ ।
ତୁଣ୍ଡ ବୋଲି ଯେବେ ପ୍ରମାଣ ନୋହିଲା ହାତପତ୍ର ଦେନି ଥାଅ ॥

ହରିଭକତ ବୋଇଲା କାହିଁ ପାଇଁ ହାତପତ୍ର ଦେବୁ ମୋତେ ।
କେଉଁ କଥାକୁ ତୁ ଆତଙ୍କି ହୋଇଛୁ ପଚାରୁଅଛୁ ମୁଁ ତୋତେ ॥
ବିପ୍ର ବୋଇଲା ତୁ ସାବଧାନ ହୁଅ ଶୁଣ ହୋ ଭକତ ହରି ।
ଯେଉଁ କଥାକୁ ମୁଁ ଆତଙ୍କ ହୋଇଛୁ କହଇ ସଧୀର କରି ॥
ପାଞ୍ଜି ପରମାଣେ ପଣ୍ଡିତ କହିଲେ ବଣୀକ ମୋହର ଯାତ ।
ବୋଇଲେ ଆଜ ନିଶି ଘରେ ନ ଥିବୁ ଅନ୍ୟ ତୋତେ ମୁଣ୍ଡକାଟ ॥
ସେ ଯେନ ଚୋର ମଣ୍ଡଳରେ ରହିବ ତୁ ଯାଇ ମୋ ଘରେ ଥିବୁ ।
ଚଳନୀ ପ୍ରଭୃତି ଯେ ଯାହା ଗୃହରେ ପର୍ବପରସ୍ପେ ରହିବୁ ॥
ଚେଷ୍ଟା କରି ତୋତେ ତିନିଶ ଟଙ୍କା ମୁଁ ଯାଚୁଅଛୁ ଭାଇ ।
ଜାଣ୍ଟ ନ ବିଚାରି ଆଜକ ମାତ୍ର ତୁ ଆମ୍ଭଘରେ ରହ ଯାଇଁ ॥
ବ୍ରାହ୍ମଣର ବାଣୀ ଏସନକ ଶୁଣି ହରିଭକତ ବୋଇଲା ।
ମୋହ ବିପ୍ରରକୁ ଏ କଥାମାନ ତ କହୁଛଁ ଭଲ ନୋହିଲା ॥
ତୋହ ଜୀବନକୁ ଏତେ ଆଶ କଲୁ ମୁଁ ଯହୁଁ ଆସିଲି ମାଗି ।
ତୁ ଆଜ ନିଶିରେ ମୋ ଘରେ ରହିବୁ ମୁଁ ଥିବି ତୋ ଘର ଜଗି ॥
ହୋଇଲେ ହେଉ ପଛେ ଏହା କରିବା ମନେ କଲୁ ଯେବେ ଶଙ୍କା ।
ଧନପାଇଁ ଯେବେ ଜୀବନ ମୁର୍ଚ୍ଛିବ ପ୍ରବେଶ କର ତୁ ଟଙ୍କା ॥
ଶୁଣି ସେ ବ୍ରାହ୍ମଣ ହରଷ ହୋଇଣ ଧାଡ଼ିକାରେ ଗଲା ଚଳି ।
ଘରଜା ଆଗରେ ମଣାଇ କହିଲା ପଣ୍ଡିକଟି ଆନ୍ତ ପାଳି ॥
ଭଲା ମୁଁ ଗଲି ତରକ ତାକୁ କଲି କଥାରେ ବୋଧ ହୋଇଲା ।
ଦଇବେ ସେ ଯେ ପାଷାଣ୍ଡ ଲୋକ ସିନା ଜ୍ଞାନ ତା ଉଦଏ ହେଲା ॥
ଆଣ ମୋ ଟଙ୍କା ନ କର କିଛି ଶଙ୍କା ବହନ ଗଣ୍ଠିରେ ବାନ୍ଧ ।
ବିଧାତା ଆମ୍ଭଙ୍କୁ ଏ ଲାଭ ଦେଇଛି ମୁଲିଆ ସେହିଯେ ଅନ୍ଧ ॥
ଏ ଧନଗୁଡ଼ାକ ଲକ୍ଷ ନମନ୍ତେ ଯେ କାର୍ଯ୍ୟବେଳେ ତାକୁ ଦେବା
ତେଣୁ ଏକାଗ୍ରେ ସନ୍ଧସେ ଟଙ୍କା ଯେ ଘରକୁ ଯେନ ଅଣିବା ॥
ଶୁଣି ସେ ବ୍ରାହ୍ମଣୀ ବେଗେ ଟଙ୍କା ଆଣି ଗେଣ୍ଡ ହସ୍ତରେ ଦେଲା ।
ତିନିଶ ଟଙ୍କା ଗଣ୍ଠିରେ ବାନ୍ଧି ବିପ୍ର ଭକତ ଘରକୁ ଗଲା ॥
ତା କଣ୍ଠକ ଯାଇ ବିନୟ ହୋଇଣ କହିଲା ଅନେକ ମତେ ।
ବୋଇଲା ଏ ଧନ ଜଗନ୍ନାଥ ପ୍ରଭୁ ଅନୁଗ୍ରହେ କଲେ ତୋତେ ॥

ପଦାର୍ଥଗଣ ମୋ ବୋଲ ତୁମ୍ଭେ ଶୁଣ କିଚ୍ଛୁହିଁ ନ ଘାଲି ଅଙ୍ଗ ।
ତୁମ୍ଭେ ବେନ ପ୍ରାଣୀ ଆମ୍ଭ ଘରେ ରୁହ ତୁମ୍ଭ ଘରେ ଆମ୍ଭେ ରହୁଁ ॥
ବିପ୍ର ବଚନରେ ଭକତ ବୋଇଲା କଥାଏ କହିବା ତୋତେ ।
ଯହିଁ ପାଇଁ ମୋତେ ଧନ ଆଣିଦେଲୁ ହାତପତ୍ର ଦିଅ ମୋତେ ॥
ଯାଚି ଦେଲ୍ ଦ୍ରବ୍ୟ ନିମନ୍ତେ ପଛେ ତୁ ନିସତ ହୋଇବୁ ଯେବେ ।
ଦୁଃଖୀ ଲୋକ ମୁହିଁ କାହାକୁ କହିବି ହଟହଟା ହେବ ତେବେ ॥
ହରି ଭକତ ବଚନେ ଦ୍ୱିଜବର ହାତପତ୍ର ଖଣ୍ଡେ ଲେଖି ।
ବୋଇଲା ଏ କଥା ପ୍ରମାଣ ମୋହର ଦିଗପାଳେ ତୁମ୍ଭେ ସାକ୍ଷୀ ॥
ଯେବେ ଏ ବଚନ ମୁଁ କରିବି ଆନ ଦଶଗୁଣେ ଦେବ ଶାସ୍ତି ।
ରାଜା ଘରକୁ ସହସ୍ରେ ଟଙ୍କା ଦେବି ଏ କଥା ଅଟେ ଯୁକତି ॥
ଏହା କହି ବିପ୍ର ଲେଖିଥିବା ପତ୍ର ହରିଭକ୍ତ ହସ୍ତେ ଦେଲା ।
ଭାର୍ଯ୍ୟାକୁ ଘେନି ହରିଭକତ ଯେ ବ୍ରାହ୍ମଣ ଘରକୁ ଗଲା ॥
ସମ୍ଭାଳି ସେ ଧନ ହରଷିତ ମନ ମଧ୍ୟରେ ପ୍ରବେଶ ହେଲେ ।
ବ୍ରାହ୍ମଣ ବ୍ରାହ୍ମଣୀ ଦୁଇ ଲୋକେ ମିଳି ଭକତ ଘରକୁ ଗଲେ ॥
ସୁନ୍ଦର ହୋଇ ରହିଲେ ଦୁହେଁ ତହିଁଙ୍କ ମନ ହରଷ ।
ଏସନ ସମୟେ ରଜନୀ ହୋଇଲା ଘନ୍ତ ତେର ପରବେଶ ॥
କୃପଣ ପଣ୍ଡା ଯେ ଧନ ଆଣିବାକୁ ଆଶା କରିଥିଲା ବସି ।
ଶଙ୍ଖ ଧ୍ୱନି ସ୍ଫୁରି କୋକିଳ ରାବିଲା ପାହିଲା ସେ ଦିନ ନିଶି ॥
ଦେଖିଣ ବ୍ରାହ୍ମଣ ମାନସ ତପେଣ ବୋଇଲା ବିକଳ ଭାବେ ।
ଏତେବେଳେଯାଏ ଧନ ତ ନଇଲା କି ବୁଦ୍ଧି କରିବି ଏବେ ॥
ସକଳ କଥା ବାର୍ତ୍ତା ଯେତେ ତ ବ୍ୟବସ୍ଥା ସବୁ ତ ମିଛ ହୋଇଲା ।
କିସ ବିଚାରିଣ ବିଧାତା ପୁରୁଷ ଏଡ଼େ କର୍ମ କପାଁ କଲା ॥
ଏବେ କି କରିବ କାହିଁକି ମୁଁ ଯିବ ବୁଦ୍ଧି ବାଟ ଦିଶୁ ନାହିଁ ।
ହାତପତ୍ର ଦେଇ ଫୁକତେ ହାରିଲି କାହାକୁ କହିବି ଯାଇଁ ॥
ବ୍ରାହ୍ମଣ ମୁଖ ଦେଖି କରି ବିମୁଖ ବ୍ରାହ୍ମଣୀ ବୋଲେ ବଚନ ।
ଲୋଭ ବଢ଼ାଇ ଯେ ଜ୍ଞାନ ହରାଇଲ ଅକାରଣେ ଗଲା ଧନ ॥
କିସ ପାଞ୍ଚ କଲ କାହାଠୁଁ ଶୁଣିଲ ଘର ବୁଡ଼ାଇଲ ଥାଇଁ ।
ପର ଧନକୁ ଯେ ଆଶ ବଢ଼ାଇଲ ବିଧାତା ସହିବ କାହିଁ ॥

ଏବେ ତୁମ୍ଭେ ନଷ୍ଟ ବନ୍ଧନ ହୋ ଉଠ ଆପଣା ଘରକୁ ଯିବା ।
ଅର୍ଜିଲା ଫଳ ତ ଦେଖୁଛରେ ପଡ଼ିଲୁ ପର ଘରେ କପାଁ ଥିବା ॥
ଗଣ୍ଠି ଧନ ପର ହସ୍ତରେ ଦେଲୁ ଯେ କହୁଛୁଁ ନୋହିଲା କାର୍ଯ୍ୟ ।
ଲୋକେ ଜାଣିଲେ ଉପହାସ ହୋଇବ ତେଣେ ତ ପାଇବା ଲାଜ ॥
ଶୁଣି ତା ବ୍ରାହ୍ମଣ ମାନସ ତାପେଣ ଘରନାକୁ ଘେନ ଚଳି ।
ନିତାନ୍ତ ମଳୁ ପ୍ରାପ୍ତକ ହୋଇ ବିପ୍ର ନିଜ ପୁରେ ଯାଇଁ ମିଳି ॥
ଶ୍ରୀକୃଷ୍ଣ ଭକତ ଫୁରୁଣା ଚିତ୍ତରେ ଆପଣା ଘରକୁ ଗଲେ ।
ଶ୍ରୀ ଜଗନ୍ନାଥଙ୍କ ଏମନ୍ତ ମହିମା ଭକତଙ୍କୁ ଦୟା କଲେ ॥
ବ୍ରାହ୍ମଣ ତ ଶୁଣି ବିସ୍ମୟ ହୋଇଣ ପୁଣିହିଁ ଗମନ କଲା ।
ଦିନଅନ୍ତେ ଯାଇ ପ୍ରବେଶ ହୋଇଲା ଯେବଣ ମଣ୍ଡପେ ଥିଲା ।
ମଣ୍ଡନ ଭୁବରେ ରହିଲା ଯେ ତହିଁ ପ୍ରବେଶ ହୋଇଲା ନିଶି ।
ତେତିଶକୋଟି ଦେବତାଗଣ ଘେନ ବିଜେକଲେ ବ୍ରହ୍ମଋଷି ॥
ଚନ୍ଦ୍ର ସୂର୍ଯ୍ୟ ଇନ୍ଦ୍ର, ବାସୁକୀ ସହିତେ ବରୁଣ ରାଜା ଆଇଲା ।
ଯମ କୁବେର ପବନ ବୈଶ୍ୱାନର ଗହଳ ସଭା ହୋଇଲା ॥
ଚଇତନ ନାମେ କରଣେ ହଜାର ଆଜ୍ଞା ଦେଲେ ଦେବ ହରି ।
କାଲି ପଞ୍ଚାମୃତ କେମନ୍ତ ହୋଇଲା କହ କିନା ବେଗକରି ॥
ଶୁଣି କରଣ କରପତ୍ର ଯୋଡ଼ିଣ ପଛଘଞ୍ଚା ଦେଇ ଯାଇଁ ।
ବୋଇଲା ପ୍ରଭୁ ମର୍ତ୍ତ୍ୟପୁର ବାରତା ଶୁଣିମା ହେଉ ଗୋସାଇଁ ॥
ହରି ଭକତଙ୍କୁ ଯେଉଁ ପଡ଼ିଲା ତ ଶ୍ରୀମୁଖେ ଆଜ୍ଞା ହୋଇଲା ।
ସହସ୍ରେ ଟଙ୍କାକୁ ତିନିଶ ଟଙ୍କା ସେ କାଲି ଭିତରେ ପାଇଲା ॥
ସ୍ୱର୍ଗପୁର କଥା ବିଶେଷ ଅଟଇ ଇନ୍ଦ୍ରହିଁ ସଟଙ୍ଗାଳା କଲେ ।
ପାତାଳ ଭକତମାନଙ୍କୁ ବାସୁକୀ ଅନେକ ସମ୍ବାଦ ଦେଲେ ।
କାଲି ପଞ୍ଚ ପ୍ରଭୁ ସମସ୍ତେ ପାଇଲେ କେହି ଉପବାସେ ନାହିଁ ।
ନିଜର ବଚନ ଶ୍ରୀମୁଖେ କହିଲ ଶୁଣିମା ହେଉ ଗୋସାଇଁ ॥
ହରି ଭକତ ହୋଇଣ ହର୍ଷଚିତ୍ତ ଫୁରୁଣା କଲୁକ ମନ ।
ଆଜ୍ଞା ପ୍ରମାଣେ ତିନିଶ ଟଙ୍କା ଦେଲୁଁ ଶୁଣିମା ଭକତ ଧନ ॥
ପ୍ରଭୁଙ୍କ ଶ୍ରୀମୁଖେ ଏମନ୍ତ ବୋଲିଣ କହିଲା ଯେତେ କରଣ ।
ମଣ୍ଡପ କଟରେ ଥାଇ ତା ଶୁଣିଲା କୃପଣ ପଣ୍ଡା ବ୍ରାହ୍ମଣ ॥

ଆସନ୍ନ ତେଜି ମନରେ ତାହା ଭଳି ଚାହିଁଲା ବେନ ଲୋଚନେ ।
କେହ୍ମଣି ଆଡ଼େ କାହୁଁହିଁ ନ ଦିଶଇ ଶବଦ ଶୁଭୁଛନ୍ତି ଶୂନ୍ୟେ ॥
ଦେଖି ବ୍ରାହ୍ମଣ ସ୍ତମ୍ଭୀଭୂତ ହୋଇଣ ତଟେଣ କମ୍ପଇ କାୟା ।
ଦେବତାଙ୍କ ରୂପ ସେ କାହୁଁ ଦେଖିବ ଘୋଟିଅଛି ବିଷ୍ଣୁ ମାୟା ॥
ହୃଦୟରେ ଗୁଣି ବିଗୁଣିଲା ପୁଣି କୋପଭରେ କଲା ମନ ।
ବୋଇଲା ଆହେ କରଣ ମହାତମା କହୁଚ ଏ ଭାଷାମାନ ॥
ଛନଶ ଟଙ୍କା ମୁଁ ହରଭକତକୁ ଦେଇଅଛି ହସ୍ତେ ଧରି ।
ତୁମ୍ଭେମାନେ ଏବେ କେମନ୍ତେ ବୋଲୁଛ ଆମ୍ଭେ ଦେଲୁ ବୋଲି କରି ॥
ବ୍ରାହ୍ମଣର ବାଣୀ ଏମନ୍ତ ଶୁଣି କରଣ ବୋଇଲେ ତହୁଁ ।
ଆମ୍ଭେ ନ ଦେଲେ ସେ ତୋହର ଗ୍ରହବଳେ ବିପତ୍ତି ଖଣ୍ଡିବ କେହୁ ।
ରଜନୀ ଦିବସେ ନାନା କଷ୍ଟ ପଡ଼ି ଯେତେକ ଜୀବିକା କରି ।
ସେ ଧନ୍ୟ ଅର୍ଜଇ ତାର ସେ ନୁହଇ ଯେବେ ନ ଦିଅନ୍ତି ହରି ॥
ତେଣୁକରି ହାଦେ ସକଳ ପଦାର୍ଥ ପ୍ରଭୁଙ୍କ କେ ଠଭଣ୍ଡାର ।
ଏକଠାବରୁ ତାହାଙ୍କୁ ଦେଉଥାଉ ବଣିକ ବିଧି ପ୍ରକାର ॥
ଯେତେ ଧନ ଏବେ ତୋହ ଘରେ ଅଛି ତାହା ତୋତେ କହୁ କନା ।
ଯେତେକ ଖାଇବୁ ତେତେକ ତୋହର ଅଧିକ ଆମ୍ଭର ସିନା ॥
ଏ କଥା ବାହ୍ମଣ ଧ୍ରୁବ ଜାଣି ହୃଦପଦ୍ମେ ଥାଅ ଚେତ ।
ଏତେ ବୋଲି ଦେବେ ଅନ୍ତର୍ଦ୍ଧାନେ ଗଲେ ପାହିଲା ସେ ଦିନ ରାତି ।
ଯେଉଁ ମଣ୍ଡପ ଭିତରେ ଦ୍ୱିଜବର ଶୟନ କରିଣ ଥିଲା ।
ରଜନୀ ପାହିଲାବେଳକୁ ସେ ଶୁଣି ଅନ୍ତର୍ଦ୍ଧାନ ହୋଇଗଲା ॥
ଦେଖି ବ୍ରାହ୍ମଣ ମାନସ ତାପେଣ ଘରକୁ ବାହୁଡ଼ି ଯାଇଁ ।
ଶ୍ରୀ ଜଗନ୍ନାଥଙ୍କ ଚରଣେ ଶରଣ ଦୀନକୃଷ୍ଣ ଦାସ କହି ॥
ଧନପତି ବାଣୀ ଏସନକ ଶୁଣି ସନ୍ତୁଷ୍ଟ ଯୁଧିଷ୍ଠି ସାନ ।
କୁବେର ମୁଖକୁ ଅନାଇ ବୋଇଲେ ଶୁଣ ତୁ ମୋର ବଚନ ॥
ଧର୍ମ ଯୁଧିଷ୍ଠି ଯେ ମାନସରେ କଷ୍ଟି ପିତୃକାର୍ଯ୍ୟ କରିବାକୁ ।
ଲକ୍ଷେ ଭରଣ ଧାନ ଋଣ ମାଗନ୍ତି ପେଷିଛନ୍ତି ତୋହଠାକୁ ॥
ଏଥିକି ବିଗୁର ଦେବୁ କି ନ ଦେବୁ ସ୍ୱରୂପ ଆମ୍ଭଙ୍କୁ କହ ।
ବିଳମ୍ବ କଲେ ସେ ଠାକୁରଙ୍କ ମନେ କ୍ରୋଧ ହୋଇବ ଅସହ୍ୟ ॥

ବିଶୁଦ୍ଧ ସୁବର୍ଣ୍ଣ ପାଣିଦ୍ରବ୍ୟମାନ ଦର୍ପଣ ଚାମର ନେବା ।
ନେତ ପଟଣୀ ଦେବାଙ୍ଗ ଝୀନବାସ ରାଜାଙ୍କୁ ଯେ ନେଇ ଦେବା ॥
ଏ ବିଧି ଚରିତର ଯେମନ୍ତେ ପ୍ରମାଣ ଶାସ୍ତ୍ରରେ ଲେଖା ହୋଇଛି ।
ମୂଳ କଳନ୍ତର ଏକ ବେଳେ ଦେବା ଅପ୍ରତେ ନ କର କିଛି ॥
ଭୀମସେନ ବାଣୀ ଏସନେକ ଶୁଣି କୁବେର ବୋଇଲେ ତହିଁ ।
ଶ୍ରୀ ଜଗନ୍ନାଥଙ୍କ ଆଜ୍ଞାରେ ଦେବି ମୁଁ ଯୁଧିଷ୍ଠିରଙ୍କି କହ ଯାଇଁ ॥
ସେହି ଏବେ ଆସ ମୋର ପୁରେ ପଶି ଯେତେକ ପଦାର୍ଥ ନେବେ ।
କାର୍ଯ୍ୟ ସରିଲେ ଯେ ମୂଳ କଳନ୍ତର ଏକାବେଳେ ଲେଖି ଦେବେ ॥
ତା ଶୁଣିଣ ଭୀମ ହୃଦେ ବଡ ତମ କ୍ଷଣେ ହୋଇ ସ୍ତମ୍ଭୀଭୂତ ।
ଚିତ୍ତେ ବିଚାରିଲା କି ବୁଦ୍ଧି କରିବି ଏତ କହିଲା ଏମନ୍ତ ॥
ମୋହର ଅଇଲା ଜଞ୍ଜାଳ ସେ କଲା ଧନ ପାଇଁ ଏତେ ବାଇ ।
ଭଣ୍ଡାର ଯାକ ହସ୍ତରେ ନେଇ ଯିବି ଠାକୁରଙ୍କ ଆଜ୍ଞା ନାହିଁ ॥
କୁବେରର ଶିର ଯାକ ମୋ କାଖର ନେବାକୁ ମୋ ମନ ଏକା ।
ଯୁଧିଷ୍ଠିରଦେବଙ୍କ ସନମତ ନାହିଁ ତେଣୁ ମୋ ହୃଦରେ ଦକା ॥
ଏବେ ମୁଁ ଯିବି ବାରତା ଯାଇ ଦେବି ଧର୍ମ ନନ୍ଦନଙ୍କ ଆଗେ ।
କାର୍ଯ୍ୟ କାରଣ ତ କିଛିହିଁ ନୋହିଲା କହିବି କେମନ୍ତ ବାଗେ ॥
ତତ୍କ୍ଷଣେ ମାରୁତି ଚଳିଗଲା ଧାଇଁ ମିଳିଲା ଯୁଧିଷ୍ଠିର ପାଶ ।
ଖଣ୍ଡଦୂରୁ ଦେଖି ଧର୍ମଙ୍କ ନନ୍ଦନ ଭୀମଙ୍କୁ ବୋଇଲେ ବସ ॥
କି କାର୍ଯ୍ୟ କଲ ବାରତା ଭଲ ନକି କହ କହ ବୃକୋଦର ।
ଭୀମ ବୋଇଲା ସେ କିଛି ତ ନ ଦେଲା ପାପିଷ୍ଠ ମୂଢ଼ କୁବେର ।
ଅପାର କଥା କେତେ ଯେତେ ବାରତା କହିଲା ଅନେକ ଭାବେ ।
ଶୁଣିକରି ମୋର ଗର୍ବ ତରଳିଗ ବାହୁଡ଼ି ଅଇଲି ରାଗେ ।
ସେବେ ଗୋସାଇଁ ଆଦେଶ ଥାନ୍ତା ଦେଇ କାଟରେ ଯାକନ୍ତି ମୁଣ୍ଡ ।
ଏକା ମୁଷ୍ଟିଘାତେ ଭଣ୍ଡାରଯାକ ଯେ ସମସ୍ତ କରନ୍ତି ପଣ୍ଡ ॥
ବୃକୋଦର ତମ ଶୁଣିକରି ଧର୍ମ ମନେ ଚିନ୍ତାକଲେ ହର ।
ଏତେ ଦୁଷ୍ଟଙ୍କୁ ମୁଁ କୁବେରପୁରକୁ ପେଶିଥିଲି ରଣ କର ॥
ମହତ ରଖିଲା କିଛି ନ କହିଲା ଏ କଥା ଆମ୍ଭର ଭାଗ୍ୟ ।
ଆମ୍ଭେ ଏହିକ୍ଷଣି ମନେ ତାପ କଲେ ନୋହିବ ରାଜସୂୟ ଯାଗ ॥

ଭୀମକୁ ଚାହିଁ ଯୁଧିଷ୍ଠି ନରସାଇଁ ବୋଇଲେ ଶୁଣ ପାବନ ।
ଆମ୍ଭେ ଆପଣେ କୁବେରଠାକୁ ଯିବୁଁ ଶ୍ରୀଜଗନ୍ନାଥଙ୍କୁ ଘେନ ॥
ଭୀମକୁ ସଙ୍ଗରେ ଘେନିଣ ରଙ୍ଗରେ ଚଳିଲେ ଧର୍ମଙ୍କ ଶିଷ୍ୟ ।
ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିଣ ବୋଇଲେ କରିବା କିସ ॥
ପିତାଙ୍କ କଷ୍ଟ କେମନ୍ତେ ହେବ ନଷ୍ଟ ବୋଇଲେ କରୁଣାସାଇଁ ।
ଲକ୍ଷେଭରଣ ଧାନ ଋଣ କରିବା ଯଜ୍ଞବିଧି କାର୍ଯ୍ୟ ପାଇଁ ।
ପାଟ ପତନ ସିନ୍ଧୁଆ ଶେଯ ଘେନ ଦେବାଙ୍ଗ ପଡ଼ନୀମଧ୍ୟେ ॥
ଚାମର ଦର୍ପଣ ସୁବର୍ଣ୍ଣର ଝୁମା ଏଥୁ ଆଣିବା ଥୋକାଏ ।
ମାଣିକ୍ୟ ହୀରା ଯେ ମୁକ୍ତାର ଝରା ଅପୂର୍ବ ଗନ୍ଧ ଆମାନ ॥
ଏଥି ଥୋକାଏ ଋଣ କରି ଆଣିବା ବୋଇଲେ ଧର୍ମନନ୍ଦନ ॥
ଯୁଧିଷ୍ଠିର ବାଣୀ ଏସନକ ଶୁଣି ଆଜ୍ଞାଦେଲେ ଚକ୍ରଧାରୀ ।
ତୁମ୍ଭ ବଚନ କେହୁ ଆନ କରିବ ଚାଲ ଯିବା ଋଣକରି ।
ଏହିରୂପେ କହି ସେ କରୁଣାସାଇଁ କୁବେର ଠାବଁ କି ଗଲେ ।
ଦଣ୍ଡେଦୂର ଦେଖି ଧନପତି ତାଙ୍କୁ କୋଟି ଦଣ୍ଡବତ କଲେ ॥
ଶିରେ ବେନିକର ଯୋଡ଼ିଣ କୁବେର ବୋଇଲେ ଆହେ ଗୋସାଇଁ ।
ଆଜ୍ଞା ଦେଇଥିଲେ ଶ୍ରୀମୁଖୁ ଯାଆନ୍ତି ପାଦପଦ୍ମ କାନ୍ଧୁଁ ପାଇଁ
ଆଜ ମୋ ଜୀବନ ସୁଫଳ କରମ ଦର୍ଶନ କଲି ଶ୍ରୀମୁଖ ।
କୋଟିଜନ୍ମର ପାତକ ଖଣ୍ଡ ଗଲା ଲଭିଲି ପରମ ସୁଖ ॥
ଆହେ ଦେବ ହରି ଶୁଣିମା ଗୁହାରି ଜଣାଉଅଛୁ ମୁଁ ଯାହା ।
କେଉଁ କଥାକୁ ଆଗମନ କରିଅଛ ଅଶେଷ ବ୍ରହ୍ମାଣ୍ଡ ନାହା ॥
କୁବେରର ବାଣୀ ଏସନକ ଶୁଣି ବୋଇଲେ କରୁଣାସାଇଁ ।
ଯୁଧିଷ୍ଠିର ଦେବଙ୍କୁ ଧାନ ଋଣ ଦେବୁ ଆସିଅଛୁ ତହିଁ ପାଇଁ ॥
ଯା ଦେବୁ ତା ନେବୁ ଭଣ୍ଡାର ଆମ୍ଭର ତୋତେ ଦେଇଅଛୁ ପୁଣ ।
ଯେଣୁକରି ଆମ୍ଭେ ତହୁଁ କହୁ ନୋହୁଁ ଧର୍ମଶାସ୍ତ୍ରର ପ୍ରମାଣ ॥
ଏଥକୁ ଆମ୍ଭେ ଯେ ଲଗା ହେଲୁଁ ଜାଣ ମୂଳ କଳନ୍ତର ଯେତେ ।
କାର୍ଯ୍ୟ ସରିଲେ ଏ ଭଣ୍ଡାର ପଦାର୍ଥ ବୁଝିନେବୁ ବିଧିମତେ ॥
ପ୍ରଭୁଙ୍କୁ ଚାହିଁଣ କୁବେର କହଇ ଶୁଣ ତୁମ୍ଭେ ଚକ୍ରପାଣି ।
ଯେଉଁ ମୁଖରେ ଯୁଧିଷ୍ଠି ଋଣ ନେବେ ସେ ମୁଖେ ଦେବେ କି ଆଣି ॥

ଶ୍ରୀକୃଷ୍ଣ ବୋଇଲେ ତୁ ଯାହା କହିଲୁ ଶାସ୍ତ୍ରବିଧି ପରମାଣ ।
ସାହୁ ଖାତକର ଯେମନ୍ତ ବେଭାର ତୋ ଆଗେ କହିବା ଶୁଣ ॥
ଧର୍ମଶାସ୍ତ୍ର ପରମାଣେ କହୁଅଛୁଁ ଭ୍ରାନ୍ତ ନ କରିବୁ କିଛୁ ।
ସାହୁ ଖାତକ ବୋଲିଣ ଦୁଇ ଜଥା ଚାରି ଯୁଗେ ଏବେ ଅଛୁ ॥
ଧନ ଦେଇ ସାହୁ ଦ୍ରବ୍ୟ ମାଗି ଗଲେ ଖାତକ କରଇ ଶଙ୍କା ।
ନେବା ମୁଖ ଆଉ ଦେବାରେ ନୁହଇ ଅବଶ୍ୟ କରଇ ଦକା ॥
ଲେଖା ଘେନି ଆସି ସାହୁ ଘରେ ପଶି କହେ ମଧୁର ବଚନ ।
ପାଇ ଅର୍ଥ ମିଛେ ମିଛେ ବୋଲୁଥାଇ କାଲି ସୁଝିବି ତୋ ଋଣ ॥
ଲବଣ୍ୟ ହୋଇ ମୁଖରେ କହୁଥାଇ ଭିତର ମନରେ ବ୍ୟଥା ।
ଦ୍ରବ୍ୟ ଘେନି ଆସି ଗୃହରେ ପଶିଲେ ପାସୋରଇ ସବୁ କଥା ॥
କିଛୁଦିନେ ସାହୁ ଦୁଆରକୁ ଗଲେ ବାଙ୍କ କରି କହେ ମୁଖ ।
ରୋଜଗାର ଆଉ କିଛୁ କରି ନାହିଁ କୁଟୁମ୍ବେ ପାଆନ୍ତି ଦୁଃଖ ॥
ସଞ୍ଚାଳି ଘେନି ଯେ ବଣିକକୁ ଗଲି ତୁମ୍ଭଙ୍କୁ ତାହାଙ୍କୁ ଛନ୍ଦି ।
ଲାଭ ତ ତହିଁକି ଟଙ୍କାଏ ନୋହିଲା ଉଲ୍ଟାକୁ ହୋଇଲା ଗଣ୍ଡି ॥
ଖାତକର ବାଣୀ ଏସନକ ଶୁଣି ସାହୁ ମନେ ମହା ବ୍ୟଥା ।
ଅନ୍ତର୍ଗତେ ତାହା ବିଚାରି ବୋଲଇ ଏତ ବଡ଼ମୂଣ କଥା ॥
ଲାଭ ଯେ ତୋହର କର୍ମର ବେଭାର ହେଉ କି ଅବା ନ ହେଉ ।
ପଣକ ପାଇଁ କାହାଣେକ ଦେଇଛୁ ମୋତେ ତ ଏମନ୍ତ କହୁ ॥
ଯେତେବେଳେ ମୋତେ ଗୋଳାପତ୍ର ଦେଲୁ କହୁଡ଼ି ପାଇଲୁ ଜାଣ ।
ତେତେବେଳେ ତେତେ ବିନସ୍ତ୍ରୀ ହୋଇଲୁ ଏବେ କମ୍ପା ଏତେ ଟାଣ ॥
ଘରରେ ତୋହର ଯେ ସବୁ ବେଭାର ଗୋରୁ ଗାଈ ଆଦିକରି ।
ଋଣ ଖାଇ ଯେବେ ମୋତେ ଟାଣ କଲୁ କାଲି ଘେନିଯିବି ଧରି ॥
ଏତେ ବୋଲି ସାହୁ ଆପଣା ପଦାର୍ଥ ନିମନ୍ତେ କରନ୍ତେ ଯୋର ।
ଖାତକ ଯାଇ ରାଜା ଆଗେ କହିବ କଥା ଯିବ ଏତେ ଦୂର ॥
ରାଜା ରାଇ ପୁଣ ନିଜେ ନ ବୁଝିଣ ସଭାକୁ ଦେବେ ସେ କଥା ।
ଲୋକଙ୍କୁ ବୋଲିବେ ବୁଝ ତୁମ୍ଭେମାନେ ସାହୁ ଖାତକର କଥା ॥
ଥିଲା ନ ଥିଲା ଦୁଇକଥା ବୁଝିଣ ବିଚାରିବ ଧର୍ମବାଟ ।
ଅଳପ ବହୁତେ ବୋଧ ଶୋଧ କରି ଛଣ୍ଡାଉ ଦଅ ଏ ଲଟ ॥

ନ ଥିଲା ଖାତକ ମୂଳେ ମୂଳେ ଦେଇ ସଙ୍ଗରେ ନ ପଡ଼ୁ ଯୋଗ ।
ନ୍ୟାୟ କଲା ତଥା ଯେମନ୍ତ ପ୍ରକାରେ ଶେଷକୁ ହୁଅଇ ଯୋଗ ॥
ନେବା ମୁଖ ଆଉ ଦେବାରେ ନ ଥାଇ ଏତ ସ୍ୱଭାବ ଲକ୍ଷଣ ।
ଶ୍ରୀକୃଷ୍ଣ ବୋଇଲେ ଶୁଣ ଧନପତି ସାହୁ ଖାତକର ଗୁଣ ॥
ଗୋବିନ୍ଦଙ୍କ ବାଣୀ କୁବେର ଯେ ଶୁଣି ଶିରରେ ଯୋଡ଼ିଲେ କର ।
ବୋଇଲା ହେ ଦେବ ଆବର କଥାଏ କହ ମୋତେ ଚକ୍ରଧର ॥
ସାହୁ ଖାତକର ଯେ ବିଧି ଆପଣ ଶ୍ରୀମୁଖେ କହିଲ କିନା ।
ଋଣ ଦେଇ ସାହୁ ଦୁଃଖ ପାଇଲେ ଯେ ଅଧର୍ମ ହୋଇବ ସିନା ॥
ଖାତକ ଯେ ଯାଇ ରାଜା ଆଗେ କହି ସାକ୍ଷୀ ବସାଇଲା ବେଗେ ।
ଦୁଇ କୂଳ ଧର୍ମ କେମନ୍ତେ ରହିବ ଶ୍ରୀମୁଖେ କହିବା ଏବେ ॥
ଶୁଣି ଶ୍ରୀପତି ହରଷ ହୋଇ ମତ ବୋଇଲେ ଶୁଣ କୁବେର ।
ତାହା ତୋର ଆଗେ ବିସ୍ତାରି କହିବା ଧର୍ମ ଅଧର୍ମ ବେଭାର ॥
ସାହୁ ଧର୍ମ ହାଦେ କେମନ୍ତେ ଉଠଇ କଳାନ୍ତର କରେ ଠାଣ ।
ଏକ ବରଷକ ଭିତରେ ମୋହର କାହାଣକେ ଆଠପଣ ॥
ଏ ବେନି ବିଧି ବରଷ ପୂରିଗଲେ ପଦାର୍ଥ ହୋଇବା ପାଇଁ ।
ମୂଳ କଉଡ଼ି ଯେତେକ ଦେଇଥାଇ ଖାତକ ଉପରେ ଥାଇ ।
କଳାନ୍ତର ମାସେ ପଡ଼ିଆ ହୋଇଲେ ତେଜ କରଇ ପ୍ରମାଣ ।
ସେବକ ଉପରେ ଯେମନ୍ତ ଥାଇଛି ସାଆନ୍ତର ପ୍ରଭୁ ପଣ ।
ଦୁଆର ମାଡ଼ି ଅଭ୍ରଜନେ ବସଇ ନ ଖାଇଣ ଅନ୍ନ ପାଣି ।
ନାନାପ୍ରକାରେ ଗାଳି ମନ୍ଦ ଦିଅଇ ବର୍ଣ୍ଣିରେ ଯାହା ନ ଶୁଣି ॥
ବାପ ଅଜା ସାତ ପୁରୁଷ ଝାଡ଼ଇ କହି ଆସେ ଯେତେ କଥା ।
କ୍ରୋଧର ହେତୁ ହୃଦପଦ୍ମ ଭିତରେ ନ ଲାଗଇ ତେତେ ବ୍ୟଥା ॥
ରାଇ ମାଉଁସ ଏକ କରି ଗୋଳିଣ ଲବଣ ଦେଲେ ଯେମନ୍ତେ ।
ନ ଥିଲା ଖାତକ ଦେହକୁ କାଟଇ ସାହୁ ବଚନ ତେମନ୍ତେ ॥
ଖଣ୍ଡେ ଦୂରୁ ଯେବେ ସାହୁକୁ ଖାତକ ଦେଖିବ ବେନି ଲୋଚନେ ।
ଯମ ଆସୁଅଛି କାଳଦଣ୍ଡ ପାଶ ଘେନି ବିଚାରଇ ମନେ ॥
ସିଂହକୁ ଦେଖିଣ ଯେମନ୍ତେ ପ୍ରକାର ଶୃଗାଳର ଜ୍ଞାନ ବୁଡ଼େ ।
ସାହୁକୁ ଦେଖିଲେ ଖାତକ ଦେହରୁ ଜୀବନ ତେମନ୍ତ ଛୁଡ଼େ ॥

ହୃଦପଦ୍ମେ ସେ ଯେ ମୋତେ ସେବା କରି ପାଉଥାଇ ମନେ ଖେଦ ।
ସ୍ତମ୍ଭୀଭୂତ ହୋଇ ଠାବରେ ରହଇ ନ ଚଳଇ କର ପାଦ ॥
ଥିଲି ନ ଥିଲି ନ ଜାଣି ସାହୁ ଯେବେ ନିରନ୍ତର ଦେବ ଧାଡ଼ି ।
ଖାତକ ପୁଣି ଯେ ସ୍ଥାନ ଛାଡ଼ି ଗଲେ ମୂଳ ସୁଝା ଯାଇ ବୁଡ଼ି ॥
ଅସ୍ମା ଦେଖି ଯେବେ ବିଚାର ନ କଲି ସାହୁର ଅଧର୍ମ କଥା ।
ଥାଉଁ ଥାଉଁ ଯେବେ ନ ଘେନି କଲି ସେ ଖାତକ ପାଇବ ବ୍ୟଥା ॥
ବରଷକ ମୁଣ୍ଡେ ଦେଉଁ କାଳାନ୍ତର ସାହୁର ଅଧର୍ମ ଏହି ।
ସୁଝି ନ ପାରି ଖାତକ ପଳାଇଲେ ବୋଲନ୍ତି ମୋ କର୍ମେ ନାହିଁ ।
ଅନ୍ତର୍ଗତେ ପୁଣ ବିଚାରି ବୋଲଇ କି ବୃଦ୍ଧି କରିବି ଆଉ ।
ନିଷ୍ଠୁରପଣେ ପଳାଇ ଗଲି ଯେବେ ଛମାସ ବରଷ ଯାଉ ॥
କାଳାନ୍ତର ଯାହୁଁ ସୁଝି ନ ପାରିଲି ଭସ୍ମ କହିଲି ତା ଚଢ଼େ ।
ପାଞ୍ଚ ଲୋକଠାରେ କଥା ପକାଇଲେ ମୂଳ କେ ବା ଦେବ ମୋତେ ॥
ଏମନ୍ତେ ତହିଁ ଥୋକାଏ ଧନ ଗଲେ ଖାତକ ଠାବରେ ମିଳି ।
ଗୋଜାପତ୍ର ଘେନି ଘରେ ଯାଇଁ ପଶି ନାନାମତେ କରି କଳି ॥
ଦେଶ ପଧାନ ପୁରୁଷେଠି କରଣ ସଭିରି ଆଗରେ କହି ।
ନିଠକ ନିଠ ଗୁହାରି କରୁଥାଇ ବଡ଼ମାପଣରେ ରହି ।
ଗୋଜାପତ୍ର ଘେନି ଋଣ ଦେଇ ଥାଇ ଖାତକ ମୋ ପାଶେ ଥିଲି ।
ଦ୍ରବ୍ୟ ଘେନି ଆସି ଭୂମି ଦେଶେ ପଶି ବଡ଼ ପକ୍ଷପଣ କଲି ॥
ଦାଇବେ ଆସି ଦୂର ଦେଶେ ପଶିଲି କେତେହେଁ ଚାଲିବା ବାଟ ।
ଏଥିକୁ ତୁମ୍ଭେ ଉଦଯୋଗୀ ହୋଇଣ ଛଡ଼ାଇ ଦିଅ ଏ ଲଟ ॥
ଏସନକ ବାଣୀ ସାହୁଠାରୁ ଶୁଣି ଦେଶଲୋକ ମନେ ବ୍ୟଥା ।
ସଭ୍ୟ କରଣ ଖାତକକୁ ଡାକିଣ ପଚାରନ୍ତି ସବୁ କଥା ॥
ଶୁଣ ହୋ ଭାଇ ପ୍ରସନ୍ନମୁଖ ହୋଇ ଧର୍ମଶାସ୍ତ୍ର ପରମାଣ ।
ସାହୁ ଯେବେ ତୋର ଘରକୁ ଅଇଲି ସୁଝି ପାରିବୁ କି ଋଣ ॥
ପାରିଲେ କହ ନ ପାରିଲେ ରହ ଯେ ବଳପଣ ତୋତେ ନାହିଁ ।
ଆମ୍ଭେମାନେ ଲଟ ଛଡ଼ାଇ ଦେବାକୁ ଆସିଛୁଁ ମଧ୍ୟସ୍ଥ ହୋଇ ॥
ଦେଶ ଲୋକ ବାଣୀ ଏସନକ ଶୁଣି ଖାତକ ବୋଲଇ ଶୁଣ ।
ଥୋକାଏ ମୋତେ ଗୁଡ଼ ବାଢ଼ ନ କଲେ କେମନ୍ତେ ସୁଝିବି ଋଣ ॥

ମାସକୁ ମାସ କଳାନ୍ତର ଭଡ଼ ସେ ମୋହଠାରୁ ଅଛୁ ନେଇ ।
ପୁଣ ମୂଳକଳାନ୍ତର ଦଶଗୁଣ ମୋ ପରେ ଅଛୁ ବସାଇ ॥
ଯେବେ ତାହାର ପଣଶୋଧ ପାଇବ ମୋତେ କିଛୁ ଗ୍ରାଡ଼ ଦେଉ ।
ଗୋଡାପତ୍ର ଚଣ ଦ୍ରବ୍ୟ ଯେନଯାଉ କାଲ ଦ୍ୱନ୍ଦ୍ୱ କିଛୁ ନୋହୁ ॥
ଖାତକର ବାଣୀ ଦେଶଲେକେ ଶୁଣି ସମସ୍ତେ ବୋଇଲେ ଗ୍ରାଡ଼ ।
ଲେଖିଣ ବୁଝିଲେ ମୂଳକଳାନ୍ତର ଦ୍ୱିଗୁଣ ହୋଇଛ କାଢ଼ ॥
ରେଣୁକର ତୋତେ ଖାତକ କହିଲା ଯୁକତ ହୋଇଲୁ ଏଣେ ।
ଧାନ ଛନଗୁଣ କଉଡ଼ି ଦ୍ୱିଗୁଣ ଧର୍ମଶାସ୍ତ୍ର ପରମାଣେ ॥
ଏହି ଧନରେ ପାଇବା ଯାଏ ସାହୁ ଖାତକ ଉପରେ ପଣ ।
ତେଣିକି ତାହା ସୁଖରେ ଯାହା ଦେବ ତହିଁକି ନ କରେ ଟାଣ ॥
ପଣେ ମାଣେ କରି ଯେତେକ ପାଇବ ସନ୍ତୋଷେ ଘେନିବ ତାହା ।
ଆକଟ ଆଉ କେବେହେଁ ନ କରିବ ଶାସ୍ତ୍ରରେ କହୁଛି ଏହା ॥
ଏଥକୁ ଅବା ଯେ ବରୁର ନ କରି ସବୁ କଳାନ୍ତର ମାଗି ।
ଖାତକ ଧର୍ମ ବେଭାରେ ବଡ଼ ହୋଇ ସାହୁର ଖାତକ ଲାଗି ॥
ମୂଳକୁ ଯେବେ ଦ୍ୱିଗୁଣ କଳାନ୍ତର ନ ଦେଇ କରିବ କୋପ ।
ସାହୁର ତହିଁ ଅଧର୍ମ କିଛୁ ନାହିଁ ଖାତକ ପାଇବ ପାପ ॥
କଗୁଣ ଖାତକ ଦେନଗୁଣ କରି କଳାନ୍ତର ଥିବ ଦେଇ ।
ଶୁଝିଲାବେଳେ ଥୋକାଏ ନ ଗ୍ରାଡ଼ିଲେ ତହିଁରେ ଅଧର୍ମ ପାଇ ॥
ରେଣୁକର ତୋତେ ପ୍ରବୋଧ କରୁଛି ଖାତକ ଚରିବ ଗୋଜା ।
ଏହି ପଦାର୍ଥ ତୋ ଆଗଠାରେ ବଡ଼ୁ ଅଧିକ ନ ବୋଲ ଯା ଯା ।
ଏସନକ ସାହୁ ବଚନ ଶୁଣିଣ ଜଗତଜନଙ୍କ ମୁଖେ ।
ଥୋକାଏ ଏଥୁ ଗ୍ରାଡ଼ ବାଡ଼ କରିଣ ଘେନିଯାଇ ତାହା ସୁଖେ ॥
ସତ ସାହୁପଣ ଯେ ଅବା କରିଣ ଏମନ୍ତ ପ୍ରକାରେ ବାଧି ।
ନ ସତ ସାହୁର ଧର୍ମ ଗ୍ରାଡ଼ି ଯାଇ ଧନରେ ହୁଏ ପ୍ରତିବାଧି ॥
ଶ୍ରୀକୃଷ୍ଣ ବୋଇଲେ ଶୁଣ ଧନପତି ତୁମ୍ଭେ ପୁଚ୍ଛାକଲ ଯାହା ।
ସାହୁ ଖାତକର ଏମନ୍ତ ବେଭାର ତୋ ଆଗେ କହିଲୁ ତାହା ॥
ଗୋବିନ୍ଦ ବଚନେ କୁବେର ବୋଇଲେ ଶୁଣିମା କରୁଣାସାଇଁ ।
ଗଢ଼ କଳାନ୍ତର ରହିଲେ ଯେ ସାହୁ ଖାତକକୁ ଜାଣେ ନାହିଁ ॥

ଖାତକ ଯେ ଋଣ ସୁଝି ନ ପାରଣ ସ୍ଥାନ ଛାଡ଼ି ଗଲା ଯେବେ ।
ଦୁଇକୁଳ ଧର୍ମ କେମନ୍ତେ ରହିଲା ବିସ୍ତାର କହିବା ଏବେ ॥
ସାହୁ ଯେ ନଷ୍ଟେ କଲାନ୍ତର ଯେଜନ୍ମ ସେ କଥା ଅଛଇ ସତ ।
ସାହୁ ଖାତକର ଯେମନ୍ତେ ବେଭାର କହିବା ପରମ ତତ୍ତ୍ୱ ॥
ଧାନ ପାଞ୍ଚ ପାଇଁ ପ୍ରମାଣ ହୋଇବ କଉଡ଼ି ନୋହିବ ଚଢ଼ା ।
ଷୋଳପଣରେ କଲାନ୍ତର ହୋଇବ ସାତଗଣ୍ଡା ଦୁଇକଡ଼ା ॥
ଛଅ ବରଷ ଯେ କୋଡ଼ିଏ ଦିବସ ସାତମାସ ପୂରିଗଲେ ।
ମୂଳ କଲାନ୍ତର ଦୁଇ ସଚ ହେବ ଝାଡ଼ି ଯେତ୍ନ ଲେଖା କଲେ ॥
ଏ ବିଧି ସାତ ବରଷ ତିନମାସ ଦଶଦିନଯାଏ ଗଣି ।
ଏତେ କଲାନ୍ତର ସୁଝି ନ ପାରିଲେ ଖାତକ ସାହୁଙ୍କୁ ଜାଣି ॥
ତେଣିକି ତାହା ଉପରେ ପଣ ନାହିଁ ଶ୍ରୀମୁଖେ କହୁଛ କନା ।
ତାହାର ସୁଖେ ଯେତେ ଦେଇ ପରିବ ଅଧିକେ ଅଧର୍ମ ସିନା ॥
ଆକଟ ଆଉ କେବେହେଁ ନ କରିବ ସନ୍ତୋଷେ ଯେତେକ ପାଇ ।
ପାପ ପୁଣ୍ୟ ଦୁଇ ବିଚାର ନ କରି ଦୁଇକୁଳ ଧର୍ମ ଖାଇ ॥
କଲାନ୍ତର ସାହୁ ନେଲୁ ନ ପାଇଲେ ଦ୍ୱିଗୁଣ ହୁଅଇ ସାର ।
ଏଥୁ ଉଣାକଲେ ଅଧର୍ମ ହୋଇବ ଖାତକକୁ ନାହିଁ ପାର ॥
ଋଣ ଦେଇ ସାହୁ ନସତ ହୋଇଲେ ନ ଗଲେ ଖାତକଠାକୁ ।
ବରଷକ ମୁଣ୍ଡେ ନେଲେ ନ ମାଗିଲେ ଖାତକ ଜାଣିମ ତାକୁ ॥
ସିହାଣା ହୋଇ ତୁ କାହିଁ ରହିଥିଲୁ ବିଷୟ ହଟିଲା ଯହୁଁ ।
ଥିଲାବେଳେ ବାରେ କଡ଼ିକ ନଇଲୁ ଏବେ ଦେବି ତୋତେ କାହୁଁ ॥
ଦେଖ ମୋ ଅବସ୍ଥା କୁଟୁମ୍ବ ବ୍ୟବସ୍ଥା ଖାଇବାକୁ ନାହିଁ ଗ୍ରାସ ।
ଏତେବେଳେ ତୋତେ କି ଅବା ଦେବି ଛମାସ ଅନ୍ତରେ ଆସ ॥
ନ୍ୟାୟ ବଲେ ସାହୁ ଜାଣି ନ ପାରିବ ନରଣ ହୋଇବ ତାଲେ ।
ଲୋକେ ବୋଲିବେ ତୁ କପାଇଁ ନଇଲୁ ଖାତକର ଥିଲାବେଳେ ॥
ପ୍ରଭୁଙ୍କର ବାଣୀ ଏସନକ ଶୁଣି କୁବେର ମନରେ ଦୁଃଖ ।
କରପଦ୍ମ ଯୋଡ଼ି ଛାମୁରେ କହିଲା ଶୁଣ ତୁମ୍ଭେ ପଦ୍ମମୁଖ ॥
ଅଶେଷ କୋଟି ବ୍ରହ୍ମାଣ୍ଡର ଠାକୁର ସକଳ ଜନ୍ତୁର ନାହା ।
ବିନା ଆଜ୍ଞାରେ ଚରଣ ନ ହଲଇ ତୁମ୍ଭଙ୍କୁ ଉବାର କାହା ॥

ଶ୍ରୀକୃଷ୍ଣ ବୋଇଲେ ମୁଁ ସବୁ ଜାଣେଁ ଆମ୍ଭଙ୍କୁ ଉବାର କୋଟି ।
ଏକର ପଦାର୍ଥ ଆନକୁ ଦେଉଁ ଯେ ଶଠି ପଞ୍ଚମାନ କାଟି ॥
ସାଧୁର ଧନ ନ ଥିଲେ ତା ଜୀବନ ସବୁ ତ କୋଠଭଣ୍ଡାର ।
ଅଜ୍ଞା ନ ପାଇଲେ କେ ଗ୍ରହର ପାଇବ ଦେବାକୁ ଗର୍ବ କାହାର ॥
ନ ଥିଲା ଲୋକକୁ ପଡ଼ି ନିମନ୍ତେ ମୁଁ ସାଧୁଠୁ ଦିଅଇ ଧନ ।
ଦୁଇ କୁଳର ମଧ୍ୟସ୍ଥ ହୋଇଥାଇଁ ଏ କଥା ଧ୍ରୁବ ବଚନ ॥
ଖାତକର ଧର୍ମ କେମନ୍ତେ ଜାଣିମା ସାଧୁକୁ ମାୟା ନ କରି ।
ଗୃହ ଭିତରେ ଯେତେକ ଦ୍ରବ୍ୟ ଥିବ ଦେଖାଇବ ହସ୍ତ ଧରି ॥
ଧାନ କଉଡ଼ି ଯେ ସୁନା ରୂପା ଯେନ ଗୋରୁ ଗାଈ ଆଦିମାନେ ।
ଯେତେକ ଦ୍ରବ୍ୟ ଆପଣେ ଅର୍ଜିଥିବ ଦେଖାଇବ ସବୁ ଠାନେ ॥
ଗୁପତ କରି ପଦାର୍ଥ ନ ଥୋଇବ ନିର୍ମଳ କରିବ ମନ ।
ତାହାଙ୍କୁ ମୋର ଦଣ୍ଡବତ ଅଟଇ ଏ କଥା ଧ୍ରୁବ ବଚନ ॥
ଲାବଣ୍ୟ ଭାବେ ବଚନରେ କହିବ ଅନ୍ତେ ନ କରିବ ମାୟା ।
ଏମନ୍ତ ଖାତକ ସଙ୍ଗରେ ମୁଁ ଥାଇ ତାଙ୍କୁ ମୋର ବଡ଼ ଦୟା ॥
ସାଧୁ ଧର୍ମପଣ କେମନ୍ତେ ଜାଣିମା ଖାତକ ଅବସ୍ଥା ଦେଖି ।
ଅନ୍ନ ବସ୍ତ୍ର ସବୁ ଯେତେକ ଲାଗିବ ବାରମାସ ଦେବ ଲେଖି ॥
ନ ଥିଲା ଦେଖିଲେ ଜୀବିକା ନିମନ୍ତେ ସଙ୍କଳ୍ପ ପୂଣିହିଁ ଦେଇ ।
ନିର୍ଘାତ ମଲ୍ଲକୁ ବଇଦ ଯେସନେ ପ୍ରତିପାଳି ଆଣୁଥାଇ ॥
ଖାତକକୁ ସୁହିଁ ବୋଧକରି କହି ତୁ ଯେବେ ପାଇଲୁ ଦୁଃଖ ।
ମୋହର ଧର୍ମକୁ ମୁଁ ପଦାର୍ଥ ଦେଇଛୁ ତୋହର ଧର୍ମ ଏବେ ରଖ ॥
ଲେଖି ଯୋଖି ଭାତ କୁଟୁମ୍ବ ଖାଇବେ ନ ପୁଣ ବିମୁଖ ହୁଅ ।
ଆମ୍ଭୁଙ୍କୁ ବ୍ୟଗ୍ର ନିଲଜା ନ କରିବୁ ଯେମନ୍ତେ ମୋ ଦ୍ରବ୍ୟ ଥୁଅ ॥
ଧର୍ମ ପରମାଣେ କାର୍ଯ୍ୟ କରେ ଯେହୁ ଦୟା ରଖି ହୃଦଗତ ।
ଏମନ୍ତ ଲୋକ ମୋର ପ୍ରିୟ ଅଟନ୍ତି ତାଙ୍କୁ ମୋର ଦଣ୍ଡବତ ॥
ନ ଥିଲା ଖାତକ ମଲ୍ଲ ବୃକ୍ଷ ସରି ସାଧୁ ଅଟେ ଗଙ୍ଗାଜଳ ।
ବୃକ୍ଷ ପଲ୍ଲବିଲେ କଢ଼ି ବିକାଶଇ ସୁଖେ ତୋଳେ ଫୁଲ ଫଳ ॥
ପ୍ରଭୁଙ୍କର ବାଣୀ ଏସନକ ଶୁଣି କୁବେର କର ଯୋଡ଼ିଲା ।
ଝଣ୍ଟେ ଦୂର ପଛ ଘୁଞ୍ଚା ଦେଇଣ ଯେ ଚରଣ ତଳେ ପଡ଼ିଲା ॥

ପୁଣିହିଁ ଉଠି ଦଣ୍ଡବତ ହୋଇଣ ଲଲାଟେ ଯୋଡ଼ିଲା ହସ୍ତ ।
ବୋଇଲା ମୋହର ବଚନ ଶୁଣିମା ଅଶେଷ ବ୍ରହ୍ମାଣ୍ଡ ନାଥ ॥
ଶ୍ରୀମୁଖରେ ଯାହା ଆଜ୍ଞା ଦାନ କଲେ କଉଡ଼ି ନୋହିବ ଚଢ଼ା ।
ଷୋଳପଣରେ କଳାନ୍ତର ହୋଇବ ସାତଗଣ୍ଡା ବେନ କଡା ॥
ତିନି ବରଷ ସାତମାସ କୋଡ଼ିଏ ଦିବସ ପୂରିବ ଯେବେ ।
ଏତେଦିନେ ସାହୁ ମୂଳ ଯେ ପାଇବ କି ଧନ ଅର୍ଜିବ ତେବେ ॥
କୁଟୁମ୍ବ ତାର କେତେ ଭାତ ଖାଇବ ରାଜାକୁ ବୋଧିବ କାହା ।
ଏଥିକୁ ମୁହିଁ କେମନ୍ତ ପ୍ରତେ ଯିବି ଆଜ୍ଞା ହେଉ ଚଉବାହା ।
ଶ୍ରୀକୃଷ୍ଣ ବୋଇଲେ ତୁ ଯାହା କହିଲୁ ଏ ଅଟେ ଉଚିତ ବାଣୀ ।
ସାନ ବଡ଼ କରି ବିଧାତା ପୁରୁଷ ନିର୍ମାଣ କରିଛି ଆଣି ॥
ହାନି ଲାଭ ବାଣୀ ଦୁଃଖ ସୁଖ ଯେନ ଭିଆଣ ମାୟା ସଂସାର ।
ପାଞ୍ଚ ଅଙ୍ଗୁଳି ଯେ ସମାନ ନୁହଇ ଏ କଥାକୁ ତଥ୍ୟ କର ॥
ଅଳପ ଧନ ଅରଜି ଯେଉଁମାନେ ଗିରସ୍ତି ବୋଲାନ୍ତି ଭବେ ।
ନିସତ ପଣେ ସାହୁପଣ କରନ୍ତି କୁଟୁମ୍ବ ପୋଷିବା ଲୋଭେ ।
ଶିଏ ପଚିଶ କଉଡ଼ି ଅରଜିଲେ ବୋଲୁଅଛନ୍ତି ଆମ୍ଭେ ସାହୁ ।
ଆମ୍ଭ ବିନୁ ଆଉ ସଂସାର ଭିତରେ ବଡ଼ ଅଛୁ ଅବା କେହୁ ॥
ଖାତକଙ୍କୁ ଗୃହେଁ ହରଷେ ବୋଲନ୍ତି କାହିଁକି ଅଇଲୁ ଅବା ।
କାହାଣେକ ମୁଣ୍ଡେ ପଣେ ଯେବେ ଦେବୁ ଏହିକ୍ଷଣି ଗଣିଦେବା ॥
ନୋହିଲେ ଆଉ କେଉଁଠାରୁ ପାଇବୁ ତାହାକୁ କଟାଳ ଯାଇଁ ।
ଏକା କଥାଏ ତୋ ଆଗରେ କହିଲୁ ପଛକୁ ଆଉ ନ ପାଇ ॥
ଏମନ୍ତେ ତହିଁ ପ୍ରବୋଧି ତାକୁ କହି ଗୃହ ଭିତରେଣ ପଶି ।
ନ ଥିଲା ଖାତକ ସ୍ୱଭାବେ ନିରେଖ ଆଶା କରିଥାଇ ବସି ॥
ଅନ୍ତର୍ଗତେ ତାର ବିଚାର କରିଣ ଭ୍ରାନ୍ତି ଉପେକ୍ଷଇ ମନୁ ।
ବୋଲଇ ଆଉ ମୁଁ କାହାକୁ ମାଗିବି ଯେତେ ଦେନିବ ଏ ଦେନୁ ॥
ମେ ମନ କଥା ଅନ୍ତର୍ଗତେ ବାରତା ସେ କାହୁଁ ଜାଣିବ ନିଧି ।
ଏହିକ୍ଷଣି ଆଗ ସଙ୍ଖାଳି କରିଣ କୁଟୁମ୍ବ ପୋଷିବଟିକି ॥
ଏତେ ବିଚାରି ସାହୁକୁ ଅନାଇଣ ବୋଲଇ ଶୁଣ ଗୋସାଇଁ ।
ଯେତେକ ଦେନିମ ତୁମ୍ଭ ସୁଖେ ଦେନ ମୋହର କଟାଳ ନାହିଁ ॥

ଖାତକର ବାଣୀ ଏସନକ ଶୁଣି ସାହୁ ମନରେ ହରଷ ।
ଭାଇବେ ସେ ଯେ ଅଳପ ଲୋକ ସିନା କଉଡ଼ି ପାଇଲେ ତୋଷ ।।
ସାଲଣା କରି କଳନ୍ତର ଯେବଣ ପାପକୁ ନ ଥାଇ ଦେକା ।
ଧର୍ମ ଶାସ୍ତ୍ରକୁ ବର୍ଜ୍ଜିଲେ ଏମାନେ ସାହୁରେ ନୃହନ୍ତି ଲେଖା ।।
ନସତ ପଣେ ଜୀବକା ବୃତ୍ତି ପାଇ ଖାତକକୁ ବଳେ ମାରି ।
ଏମନ୍ତେ ଲୋକମାନଙ୍କୁ ଧନପତି ସାହୁରେ ଲେଖା ନ କରି ।।
ଶ୍ରୀ ଜଗନ୍ନାଥଙ୍କ ବଚନ ଶୁଣିଣ କୁବେର ଯୋଡ଼ିଲା ହସ୍ତ ।
ବୋଇଲା ମୋତେ ଅବଧାନ ହୋଇବ ଅଶେଷ ବ୍ରହ୍ମାଣ୍ଡ ନାଥ ।।
ଅଳପ ଧନ ଅରଜିଲା ଲୋକର ରିଣଦେବା ବିଧି ନାହିଁ ।
ସାହୁ ବିଧିମାନ କାହାକୁ ବୋଲିବା ଶ୍ରୀମୁଖେ କହ ଗୋସାଇଁ ।।
ପ୍ରଭୁ ବୋଇଲେ ଶୁଣିମା ଧନପତି ଯେବଣ କଥା ତୁ କହୁ ।
ଲକ୍ଷେ ମାଢ଼କୁ ଚତ୍ତିମାନ ହେଲେ ତାହାକୁ ବୋଲିବ ସାହୁ ।।
ପଚାଶ ସହସ୍ର ମାଢ଼ ରିଣଦେଲେ ଆବର ଅଧିକ ଗୁଡ଼ି ।
ପର ପଟାରେ ବଣିଜ କରୁଥିବ ପଚାଶ ସହସ୍ର ମାଢ଼ ।।
ଆବର ପଚାଶ ସହସ୍ର ମାଢ଼ ଯେ କୁଟୁମ୍ବ ଭାତକୁ ଥୋଇ ।
ଆବର ପଚାଶ ସହସ୍ର ମାଢ଼ ଯେ ଥିବ ଧନ ସ୍ଥିତ ହୋଇ ।।
ଏତେ ପ୍ରକାରେ ବିଗ୍ଭର ଯେଉଁ ଲୋକ ଧୀର ଭାବେ କାର୍ଯ୍ୟ କରେ ।
ସେ ଯେ ସଂସାରେ ସାହୁପଣ କରଇ ଏ ବିଧି ଧର୍ମ ଶାସ୍ତ୍ରରେ ।।
ପାପ ପୁଣ୍ୟ ବେନି ଆଗପଛ ଯେନ ନ କରଇ ଛନ୍ଦ ମାୟା ।
ଏମନ୍ତ ଭାବେ ସାହୁପଣ କଲେ ସେ ଖାତକକୁ ଥାଇ ଦୟା ।।
ତୁ ଯେ ଆମ୍ଭଙ୍କୁ ଦୃଢ଼କରି ପୁଚ୍ଛିଲୁ ସାହୁ ଖାତକର ଗୁଣ ।
ଧ୍ରୁବ ବଚନ ତୋ ଆଗରେ କହିଲୁ ଶ୍ରବଣ ପଥରେ ଶୁଣ ।।
ପ୍ରଭୁଙ୍କର ବାଣୀ ଏସନକ ଶୁଣି ଧନପତି ମନେ ତୋଷ ।
ରଙ୍ଗିମା ଚରଣେ ଶରଣ ପଶଇ ଅରକ୍ଷିତ କୃଷ୍ଣ ଦାସ ।।
ଏତ ତତ୍ତ୍ୱବାଣୀ ପ୍ରଭୁ ମୁଖୁ ଶୁଣି କୁବେର ପୁଚ୍ଛିଲା ଏହା ।
ଯୁଧିଷ୍ଠି ଦେବଙ୍କୁ କେତେ ଧନ ଦେବ ଆଜ୍ଞା ହେଉ ଚଉବାହା ।
କୁବେର ବଚନେ ଶ୍ରୀକୃଷ୍ଣ ବୋଇଲେ ତୋତେ କି କହିବା ବାବୁ ।
ହୀରା ମାଣିକ୍ୟ ମୁକୁତା ଆଦିକରି ସୁବର୍ଣ୍ଣର ଟଙ୍କା ଦେବୁ ।।

ସୁବର୍ଣ୍ଣ ଲକ୍ଷେ ନୃପତି ଆସିବେ ଗଣିତାରେ ହେବ ଲେଖା ।
ଲକ୍ଷ ଲକ୍ଷେ ଅଶ୍ୱ ଅଳଙ୍କାର ମୁକ୍ତି ଦେବେ ଯେ ଦେଖା ॥
ସେ ଯେ ମହାଧର୍ମ ସବୁର ଉତ୍ତମ ବଚନ କହନ୍ତି ସତ ।
ଦେବଶ୍ରୀକର ତାଙ୍କ ପାଦରେ ମୋହର ନତଶିର ଦଣ୍ଡବତ ॥
ପଣ୍ଡିତଙ୍କର ବାଣୀ ଏସନକ ଶୁଣି ଧନପତି ବୋଲେ ତହିଁ ।
କେଉଁ ପ୍ରକାରେ ଶ୍ରୀମୁଖେ ଆଜ୍ଞା ଦେଲେ ଅପ୍ରତ ପାଉଛୁ ମୁହିଁ ॥
ଯାହା ଖାଉକର ଚରିତ୍ର ଅପାର ଶ୍ରୀମୁଖେ କହିଲ ଯାହା ।
ଦେବଶ୍ରୀକର ପ୍ରଭୁ ଗ୍ରନ୍ଥର ଗ୍ରାମରେ ପଶୁରୁଅଛୁ ମୁଁ ତାହା ॥
ଲକ୍ଷେମାତ୍ର ହାଦେ ସାହାପରେ ଥାଇ ସାହାକୁ ସେ ବର୍ତ୍ତିମାନ ।
ଏମନ୍ତ ହୋଇ ସଂସାରେ ସେତେ ଲୋକ ଅରଜିବେ କେତେ ଧନ ॥
ଶ୍ରୀକୃଷ୍ଣ ବୋଇଲେ ଶୁଣ ଧନପତି କାହିଁ ପାଇଁ ଭ୍ରାନ୍ତି କରୁ ।
ପାଞ୍ଚଅଙ୍ଗୁଳି ସରସମ ନୁହଇ ଏହା କପଟ ନ ବଗୁରୁ ॥
ସବୁ ଗିରିବର ସମାନ ନୁହଇ ମେରୁ ଯେ ଅଟେ ପ୍ରଧାନ ।
ସବୁ ମୁକ୍ତା ଯେ ତୁଳନା ନୁହଇ ଗଜମୁକ୍ତା ସମାନ ॥
ସବୁ ଗଜମାନେ ଗଜ ଯେ ନୁହନ୍ତି ଗଜ ଅଟେ ଐରାବତ ।
ସବୁ ଅଶ୍ୱମାନେ ଅଶ୍ୱ ଯେ ନୁହନ୍ତି ଉଚ୍ଚୈଶ୍ରବା ବଳବନ୍ତ ॥
ସବୁ ଲୁହାମାନେ ଲୁହା ଯେ ନୁହନ୍ତି ଲୁହା ଅଟେ ଗଜବେଲ ।
ସବୁ କାଠମାନେ କାଠଯେ ନୁହନ୍ତି ଚନ୍ଦନ ସଙ୍ଗେ କେ ତୁଲ ॥
ସବୁ ମାଟିମାନେ ମାଟି ଯେ ନୁହନ୍ତି ମାଟି ସେ ଗଙ୍ଗାମୃତ୍ତିକା ।
ସବୁ ସ୍ତ୍ରୀମାନେ ସ୍ତ୍ରୀ ଯେ ନୁହନ୍ତି ପଦ୍ମିନୀ ସ୍ତ୍ରୀ ନାୟିକା ॥
ସବୁ ପକ୍ଷିମାନେ ପକ୍ଷୀ ଯେ ନୁହନ୍ତି ନ ଜାଣି କପାଇ ବଡ଼ ।
ଗରୁଡ଼ ସଙ୍ଗରେ ଆନପକ୍ଷୀ କପାଁ ଘଟନ କରତ ଲୋଡ଼ ॥
ସବୁ ଧେନୁମାନେ ଧେନୁ ଯେ ନୁହନ୍ତି କପିଳା ସଙ୍ଗେ କେ ତୁଲ ।
ସବୁ ବୃକ୍ଷମାନେ ବୃକ୍ଷ ଯେ ନୁହନ୍ତି ଅଶ୍ୱତ୍ଥ ସଙ୍ଗେ କେ ତୁଲ ॥
ସବୁ ମନୁଷ୍ୟ ଯେ ମନୁଷ୍ୟ ନୁହନ୍ତି ମନୁଷ୍ୟ ପୃଥ୍ୱୀରେ ରାଜା ।
ସବୁ ଜାତିମାନେ ଜାତି ଯେ ନୁହନ୍ତି ଜାତିରେ ଉତ୍ତମ ଦ୍ୱିଜା ॥
ସବୁ ଋଷିମାନେ ଋଷି ଯେ ନୁହନ୍ତି ଭୃଗୁଋଷି ଅଟେ ବଡ଼ ।
ସବୁ ଯୋଗମାନେ ଯୋଗ ଯେ ନୁହନ୍ତି ଶୋଭନ ଯୋଗ ସେ ଗାଢ଼ ॥

ସବୁ ବନ୍ଧମାନେ ବନ୍ଧ ଯେ ନୁହନ୍ତ ବନ୍ଧ ସେତୁବନ୍ଧ ଏକା ।
ସର୍ବି ବନମାନେ ବନ ଯେ ନୁହନ୍ତ ନନ୍ଦନବନ ସେ ଲେଖା ॥
ସବୁ ପାଟମାନେ ପାଟ ଯେ ନୁହନ୍ତ ଶରଢ଼ି ଉତ୍ତମ ପାଟ ।
ସବୁ ମରଣ ଯେ ମରଣ ନୁହଇ ମରଣ ସେ ମୁଣ୍ଡକାଟ ॥
ସବୁ ଚକ୍ରମାନେ ଚକ୍ର ଯେ ନୁହନ୍ତ ସୁଦର୍ଶନ ଚକ୍ର ଏକା ।
ସବୁ ବେଦମାନେ ବେଦ ଯେ ନୁହନ୍ତ ଗାୟତ୍ରୀ ସଙ୍ଗେ କେ ଲେଖା ॥
ସବୁ ପତ୍ରମାନେ ପତ୍ର ଯେ ନୁହନ୍ତ ପତ୍ର ଅଟେ ତାଳପତ୍ର ।
ସବୁ କ୍ଷେତ୍ରମାନେ କ୍ଷେତ୍ର ଯେ ନୁହନ୍ତ କ୍ଷେତ୍ର ଅଟେ ପୁରୀକ୍ଷେତ୍ର ॥
ସବୁ ଦ୍ୱୀପମାନେ ଦ୍ୱୀପ ଯେ ନୁହନ୍ତ ଜମ୍ବୁ ଦ୍ୱୀପ ସଙ୍ଗେ ସର ।
ସବୁ କୂପମାନେ କୂପ ଯେ ନୁହନ୍ତ ଚୁନାକୂପ ନୀଳଗିର ॥
ସବୁ ଚିନ୍ତାମାନ ଚିନ୍ତା ଯେ ନୁହଇ ଋଣ ସେ ଚିନ୍ତାରେ ଲେଖି
ସବୁ ଦୁଃଖମାନ ଦୁଃଖ ନୁହଇ ଯେ ପରଭୃତ୍ୟ ବଡ ଦୁଃଖୀ
ସବୁ କଷ୍ଟମାନେ କଷ୍ଟ ଯେ ନୁହନ୍ତ ଅନ୍ନ କଷ୍ଟ ମହାଦୁଃଖ ।
ସବୁ ଅଚିନ୍ତା ଯେ ଅଚିନ୍ତା ନୁହଇ ସାଧୁତା ପଣରେ ସୁଖ ॥
ସବୁ କୀର୍ତ୍ତିମାନ କୀର୍ତ୍ତି ଯେ ନୁହଇ ଜଳକୀର୍ତ୍ତି ଏକା ଶ୍ରେଷ୍ଠ ।
ସବୁ ବ୍ରତମାନ ବ୍ରତ ଯେ ନୁହଇ ଏକାଦଶୀଟି ଗରିଷ୍ଠ ॥
ସବୁ ପଥମାନ ପଥ ଯେ ନୁହଇ ପଥ ଏକ ସ୍ୱର୍ଗପୁରୀ ।
ସବୁ ରଥମାନ ରଥ ଯେ ନୁହନ୍ତ ନନ୍ଦଘୋଷ ରଥ ସର ॥
ସବୁ ମନ୍ତ୍ରୀମାନେ ମନ୍ତ୍ରୀ ଯେ ନୁହନ୍ତ ସହଦେବ ମନ୍ତ୍ରୀ ସମ ।
ସବୁ କ୍ଷତ୍ରୀମାନେ କ୍ଷତ୍ରୀ ଯେ ନୁହନ୍ତ କ୍ଷତ୍ରୀ ଅଟେ ପଶୁରାମ ॥
ସବୁ ପାଠମାନେ ପାଠ ଯେ ନୁହନ୍ତ ଗୀତା ଅଟେ ଭବ୍ୟପାଠ ।
ସବୁ ଘାଟମାନେ ଘାଟ ଯେ ନୁହନ୍ତ ଗୋଧିକା ଯମୁନା ଘାଟ ॥
ସବୁ ନଦୀମାନେ ନଦୀ ଯେ ନୁହନ୍ତ ଗଙ୍ଗା ସଙ୍ଗେ କେହୁ ସମ ।
ସବୁ ଗଡ଼ମାନେ ଗଡ଼ ଯେ ନୁହନ୍ତ ଲଙ୍କାଗଡ଼ ଅନୁପମ ॥
ସବୁ ସାହୁମାନେ ସାହୁ ଯେ ନୁହନ୍ତ କୁବେର ସଙ୍ଗେ କେ ସର ।
ତେଣୁକରି ତୋହ୍ମ ଆଗେ ଧନପତି କହିଲୁଁ ବିସ୍ତାର କରି ॥
କୁବେର ବୋଇଲେ ଶୁଣିମା ଗୋସାଇଁ ଦେବାଧିଦେବଙ୍କ ରାଜା ।
ତୁମ୍ଭେ ଯେ ବୋଇଲ ନ୍ୟାୟ କଲେ କାହିଁ ବହାଇ ମାଇପ ସଜା ॥

ଏ କଥା ଶୁଣି ମୁଁ ଯେତେ ପାଞ୍ଚୁ ଅଛୁ ପ୍ରତେ ଯାଉ ନାହିଁ ମନ ।
ଏଥକୁ ସଂଶୟ ଫେଡ଼ିଣ କହିବା ଭକତଜନଙ୍କ ଧନ ॥
ଶ୍ରୀକୃଷ୍ଣ ବୋଇଲେ ତୁ ଯାହା କହିଲୁ ଏ କଥା ପ୍ରମାଣ ମିନା ।
ପଦେ ୨ କଥା ବୁଝାଇ କହିବା କର୍ଣ୍ଣ ଦେଇ ଶୁଣ ଜନା ॥
ଯେତେବେଳେ ଯାହା ଗଣ୍ଠି ଧନ ହାତେ ପରହସ୍ତେ ତୋଳିଦେଇ ।
ନେବା ଆଣିବା ବେଳକୁ ସେହି କଥା କାହାର ଆସ୍ତୁଅ ନାହିଁ ॥
ଯାହା ମାଗି ଗଲେ ଖାତକ ନ ଦଏ ଥିଲେ ମିନା ତାଙ୍କୁ ଦେବ ।
ନ ଥିଲା ଖାତକ ଠାରୁ ସାହୁ ଧନ କେମନ୍ତ ପ୍ରକାରେ ନେବ ॥
ଥାଉ ୨ ତାଙ୍କୁ ହରଣ କଲେ ଯେ ଇହଲୋକେ ନାହିଁ ପାର ।
ଧର୍ମଶାସ୍ତ୍ର ପରମାଣେ ବର୍ତ୍ତିଲେ ଧିକ ଜୀବନ ତାହାର ॥
ପଛନ୍ତକାଳେ ବୋଲୁବୋଲୁ ହୋଇଲେ ଯୁଗତେ ଲାଗିବ ବ୍ୟଥା ।
ଦୁଇ ଲୋକରେ ଝଣା ଝଣି ପଡ଼ିବ ସଭିଙ୍କୁ ଯାଇ ସେ କଥା ॥
କେବଳ ଧର୍ମକୁ ଜାଣିବା ନିମନ୍ତେ ମାଗି ଦେନଇ ସେ ଗୋଳା ।
ଆପଣା ଧନ ପରହସ୍ତେ ପଡ଼ିଣ ଯୁକତେ ହୋଇଲା ସଙ୍ଖା ॥
ଶ୍ରୀକୃଷ୍ଣ ବଚନେ କୁବେର ବୋଇଲେ ଶୁଣିମା ତୁମ୍ଭେ ଗୋସାଇଁ ।
ବେହାଇ ଭରସା ସଙ୍ଖା କେଉଁ ଠାରେ ଏହା ତ ଦେଖିଲୁ ନାହିଁ ॥
ପ୍ରଭୁ ବୋଇଲେ ଅପ୍ରତେ କଲୁ ଯେବେ ଯୁକତେ ହୋଇଲା ସଙ୍ଖା ।
ସେ କଥା ତୋ ଆଗେ ବୁଝାଇ କହିବା ଏବେ ତୁ ବୁଝ ହୋ ରାଜା ।
ସତ୍ୟଯୁଗ ଭୋଗ ଗଲା ଉତ୍ତାରେ ଯେ ତ୍ରେତାଯୁଗର ଆଗମ ।
ବ୍ରହ୍ମାଙ୍କ ନନ୍ଦନ ବେନିଗୋଟି ଋଷି ଉଦର ମନ୍ଦର ନାମ ॥
ନିଶି ପ୍ରଭାତେ ବେନିଗୋଟି ଭାଇ ଯେ ସମୁଦ୍ରତଟରେ ବସି ।
ଜପ ତପ ମନ୍ତ୍ର ସନ୍ଧ୍ୟା ସାରିଣ ଯେ ମଠକୁ ବାହୁଡ଼ି ଆସି ॥
ଅନ୍ନ ବ୍ୟଞ୍ଜନ କିଛିହିଁ ନ ଭୁଞ୍ଜନ୍ତି ସେ ଯେ ଅଟନ୍ତି ସୁବୋଧ ।
ଏକା ଗାଈଗୋଟି ଦୋହନ କରିଣ ବେନି ଭାଇ ଖାନ୍ତି ଦୁଧ ॥
ପାଞ୍ଚକଳପ ହୋଇଲା ସେ ଗାଈକି ଦୋହନ କରନ୍ତି ନିତ୍ୟେ ।
ବସ୍ତୁମାତାକୁ ଟେରେହେଁ ନ ଛୁଡ଼ନ୍ତି ଆପଣା ବସ୍ତୁର ଚଢେ ॥
ଏଥୁଅନନ୍ତରେ ଏମନ୍ତ ସମୟେ କେତେହେଁ କ ଦିନ ଗଲା ।
ବାପୁଡ଼ା ନୃପତି ନରଣ ହୋଇଣ ଅନ୍ତର୍ଗତେ ଚଳାକଲା ॥

ଶୃଙ୍ଗୀ ବୋଇଲେ ବ୍ରହ୍ମାପୁତ୍ର ହୋଇ ଭଜିଲେ ଆପଣା ସୁଖ ।
ଆମ୍ଭର ଜୀବ ମତ ବିଷ୍ଟୁ ଗ୍ରହଣ ମୋତେ ନ ମାନିଲେ ଦେଖ ॥
ନବଖଣ୍ଡ ପୃଥ୍ୱୀ ଭିତରେଣ ସ୍ୱାଦେ ଯାହାର ସେତେକ ଗାଈ ।
ଦୋହନ କରି ବସିବାବେଳେ ମୋତେ ପ୍ରଥମ ଟେରେକ ଦେଇ ॥
ଏ ବେନି ଋଷି ଯେ ଗୋଧନକୁ ପୋଷି ଦୁଧ ଖାନ୍ତି କାଳେ କାଳେ ।
ପାଞ୍ଚକଳପ ହୋଇଲା ଆସି ମୋତେ ନଗଣ କଲେ ଏ ଛାଳେ ॥
ଏବେ ମୁହିଁ ଯାଇଁ ମର୍ତ୍ତ୍ୟପୁରେ ଥାଇ ତାହାଙ୍କୁ କରିବି ନାଶ ।
ଧର୍ମଶାସ୍ତ୍ର ପରମାଣେ ବିଚାରିଲେ ଏଥିରେ ଅଛି କି ଦୋଷ ॥
ଏ ଯେବେ ଏତେ ନ ଘ୍ରାଣ କଲେ ମୋତେ ନେ ହର ଅପ୍ରାଧ ନାହିଁ ।
ଥାଉ ତାଙ୍କ ମୃତ୍ୟୁ ଅବଶ୍ୟ ହୋଇବ କାହାକୁ କହିବେ ଯାଇ ॥
ଏତେ ବୋଲି କରି ବାସୁକୀ ନୃପତି ପୁତ୍ରକୁ ଡାକିଲେ ପାଶ ।
ବୋଇଲେ ବେଳାକ୍ଷତଙ୍କ ବଂଶିକରି ବନ୍ଧନ କାଟନ୍ତି ଆସ ॥
ପିତାଙ୍କ ବଚନେ ମଣିନାଗ ଗଲା ପାତାଳୁ ବାହାର ହୋଇ ।
ମନେ ତାପ କରି ମର୍ତ୍ତ୍ୟଭୁବନରେ ପ୍ରବେଶ ହୋଇଲା ଯାଇ ॥
ଏମନ୍ତ ସମୟେ ବ୍ରହ୍ମାଙ୍କ ନନ୍ଦନେ ଗାଈଙ୍କୁ ଦୋହନ କଲେ ।
ସୁବର୍ଣ୍ଣଖଣ୍ଡଗୋଟିକରେ ପୂରାଇ ଶିକାରେ ତୋଳି ଥୋଇଲେ ॥
ଦଣ୍ଡକମଣ୍ଡଳୁ ତମ୍ବାପାତ୍ରୀ ନେଇ ସାଗରକୁ ଚଳି ଯାଇ ।
ସ୍ନାନ ସାରିଣ ପୂର୍ବ ମୁଖେ ବସିଲେ ପାଦପଦ୍ମେ ମନ ଦେଇ ॥
ସନ୍ଧ୍ୟା ତର୍ପଣ ଯଥାବିଧି ସାଧନ କରନ୍ତି ସମୁଦ୍ରତଟେ ।
ଏମନ୍ତ ସମୟେ ମଣିନାଗ ଯାଇ ପଶିଲା ମୁନିଙ୍କ ମଠେ ॥
ଦେଖିଲା ନୟନେ ସ୍ୱର୍ଣ୍ଣେ ପୂର୍ଣ୍ଣ ହୋଇ ଶିକାରେ ଅଛି ଗୋରସ ।
ହୃଦରେ ପଶିଲା ସୁଯୋଗ ମିଳିଲା ଦୁଧରେ ଗ୍ରାସିବ ବିଷ ॥
ଗୋ-ରସ ଖାଇ ମରିବେ ଦୁଇଭାଇ ପିତାଙ୍କ କାର୍ଯ୍ୟହିଁ ହେବ ।
ଆମ୍ଭେ ଯେ ମର୍ତ୍ତ୍ୟ ଭୁବନକୁ ଆଇଲୁଁ ଏକଥା ନିଷ୍ଫଳ ନୋହୁ ॥
ଏହା ଭାବି ନାଗ ହୋଇ ଉଦବେଗ ଦୁଧରେ ଗରଳ ଦେଲା ।
ଋଷିଙ୍କୁ ନ ପାଇ ବିମୁଖ ସେ ହୋଇ ପାତାଳପୁରକୁ ଗଲା ॥
ଏଥି ଅନନ୍ତରେ ଗୋରସ ଭିତରେ ଗରଳ ହୁଅନ୍ତେ ସଙ୍ଗ ।
ଋଷିଙ୍କ ମଠ ଗୃହରେ ଥାଇ ତାହା ଦେଖୁଥିଲା କାଠବେଙ୍ଗ ॥

ମନେ ମନେ ଗୁଣି ମଣ୍ଡୁକୀ ଗୋଟି ଯେ ବିଚାର କରୁଛି ବସି ।
ଏତେବେଳେ ଆସି ପ୍ରମାଦ ପଡ଼ିଲା ମରିବେ ଏ ବେନି ଋଷି ॥
ମୂର୍ଖ ଏହାଙ୍କ ମଠକୁ ଆଶ୍ରେ କରି ନିଷ୍ଫଳ ହୋଇଲା କାର୍ଯ୍ୟ ।
ମୋହ ଦେଖୁ ଦେଖୁ ବେନିଗୋଟି ଋଷି ପ୍ରାଣେ ନାଶ ଯିବେ ଆଜ ॥
ହେ ଧର୍ମଦେବତା କି ବୁଦ୍ଧି କରିବ ଅଜ୍ଞାନ ଅଟଇ ମୁହିଁ ।
ବେଗରେ ମଣ୍ଡୁକୀ ତୁଣ୍ଡ ନ ଫିଟଇ କାହାକୁ କହିବ ଯାଇଁ ॥
ଏ ଦୁଧ ଆସି ଭୁଞ୍ଜିବେ ଦୁଇ ଋଷି ଅବଶ୍ୟ ହୋଇବେ ନାଶ ।
ମୁହିଁ ଦେଖୁ ଦେଖୁ ଦ୍ୱଂସ ହତ୍ୟା ଦୋଷ ମୋତେ ଲାଗିବ ଅବଶ୍ୟ ॥
ତେଣୁ ଏ ଗୋରସ ଭିତରେ ପଡ଼ିବ ଏ ଛାର ଜୀବନ ଯାଉ ।
ତାହାଙ୍କ ପାଇଁ ମୁହିଁ ପଛେ ମରିବ ଯୁଗେ ଯୁଗେ କଥା ଥାଉ ॥
ଏତେ ବୋଲି ଭାଠମଣ୍ଡୁକୀ ଗୋଟି ଯେ ଅନ୍ତର୍ଗତେ ଚିନ୍ତା କଲା ।
ଦୁଧଭାଣ୍ଡ ମଧ୍ୟେ ଡେଇଁଣ ପଡ଼ିଲା ଧର୍ମଙ୍କୁ ମନେ ସୁମରି ॥
ଋଷିଙ୍କ ପାଇଁ ସେ ଆତୁର ହୋଇ ପ୍ରାଣତ୍ୟାଗ କଲା ସହୁଁ ।
ଜପ ତପ ସାରି ବେନିଗୋଟି ଋଷି ମଠକୁ ଅଇଲେ ତହୁଁ ॥
ମନ୍ଦର ଋଷିଙ୍କ ଉଦର ବୋଇଲେ ଶୁଣ ତୁ ଭାଇ ତାପସ ।
ଦୁଧଭାଣ୍ଡ ଆଣ ବଦନ ଭୁଞ୍ଜିବା ଲାଗୁଛି ଭୋକ ବିଶେଷ ॥
ଜ୍ୟେଷ୍ଠ ଭାଇ ବୋଲି ଉଦର ଶୁଣି ଯେ ଭିତରେ ପଶିଲେ ଯାଇଁ ।
ଶିକାରୁ ଗୋ-ରସ କାଢ଼ିଣ ଆଣିଲେ ମଣ୍ଡୁକୀ ପଡ଼ିଛି ତହିଁ ॥
ତା ଦେଖି ତାପସ ମନେ ଲଜ୍ଜା ପାଇ ବୋଇଲେ ହେ ଜ୍ୟେଷ୍ଠଭ୍ରାତ ।
ଗୋ-ରସ ସମସ୍ତ ହେଲା ଅପବିତ୍ର ଅଗୋଚର କଥା ଏତ ॥
ଆଜତ ବେଳରେ ଉପବାସ ହେଲା କେମନ୍ତେ ବଞ୍ଚିବା ନିଶି ।
ପାପିଷ୍ଠ ମଣ୍ଡୁକୀ କାହିଁ ଆଇ ହାଦେ ଦୁଧରେ ପଡ଼ିଲା ଆସି ॥
ମନ୍ଦରର ବାଣୀ ଉଦର ଯେ ଶୁଣି ବୋଇଲେ ଦେଖିବା ଆଣ ।
କେମନ୍ତ ପ୍ରକାରେ କାଷ୍ଟ ବେଙ୍ଗ ଗୋଟି ଗୁଡ଼ିଅଛି ନିଜ ପ୍ରାଣ ॥
ଏତେବୋଲି ଋଷି ତଉପରେ ଆସି ଗୁହିଁଲେ ମଣ୍ଡୁକ ମୁଖ ।
ବୋଇଲେ ତୁ ଯେବେ ଆମ୍ଭ ହାତେ ମଲୁ ଭୁଞ୍ଜିବୁ ଅନେକ ସୁଖ ॥
ପଶୁ ଜନ୍ମ ହୋଇ ଜ୍ଞାନ ପାଇ ଯେବେ ପର ଉପକାରୀ ଅଟୁ ।
ନନ୍ଦସୁତା ହବୀ କନ୍ୟା ଏ ହୋଇବୁ ଆମ୍ଭ ବର ତୋତେ ଖଟୁ ॥

କୋହଳ ତୁ ତପ ଆମ୍ଭର ଅପକାରେ ଆସିଥିବୁ ଆମ୍ଭ ପାଶ ।
ଅଧିକ କି ତୋତେ ଶାପ ଦେବା ଆଉ ଏହିକ୍ଷଣି ଯିବୁ ନାଶ ॥
ଋଷିଙ୍କ ବାଣୀ ପାଷାଣ ରେଖା ଜାଣି ଅନ୍ୟଥା ନୋହିଲା ସହି ।
ତତକ୍ଷଣେ କାଷ୍ଠ ମଣ୍ଡୁକା ଗୋଟି ଯେ କନ୍ୟାଏ ହୋଇଲା ତହିଁ ॥
କୋଟି କୋଟି ଦଣ୍ଡବତ ହୋଇଣ ସେ ମୁନି ପାଦେ କଲା ସେବା ।
ସୁନ୍ଦରୀପଣେ ରମ୍ଭାଠାରୁ ବଳଇ ପୃଥ୍ୱୀରେ କି ଲକ୍ଷ ଦେବା ।
ଦେଖି ବଦ୍ଧ୍ନଋଷି ମନେ ହୋଇ ତୋଷୀ କନ୍ୟାକୁ କୋଳରେ ଧରି ।
ବୋଇଲେ ତୁ ଆମ୍ଭ ଦୁହିତା ହୋଇଲୁ ପାଳିବା ଯତନ କରି ॥
କନ୍ଦମୂଳ ଫଳ ଗୁଡ଼ାଏ ଆଣିଣ ପାଖରେ ତାହାର ଦେଲେ ।
ଏହି ମଠେ ଥାଇ ବସିଥିବୁ ବୋଲି ସନ୍ଧ୍ୟା କରିବାକୁ ଗଲେ ॥
ଜହୁଁ କହୁଁ ଏହି ଦବ୍ୟ ବେଶ ହୋଇ ଦଶିଲା ଯେ ଦବ୍ୟା ଶୋଭି ।
କାଲୁ କି କାଲି ନବଯୁବା ହୋଇବ କାହାକୁ କରିବା ବିଭା ॥
ରଜୋବତୀ କନ୍ୟା ଅପ୍ରଦାନ ହୋଇ ପିତା ଘରେ ଯେବେ ଥାଇ ।
ସପତ ପୁରୁଷ ସହିତେ ତାହାର ନର୍କରେ ପଡନ୍ତି ଯାଇ ॥
ଆମ୍ଭେ ଯେ ଋଷି ବନମଧ୍ୟରେ ପଶି କନ୍ଦମୂଳ କରୁଁ ଭୋଗ ।
ଏ ଦବ୍ୟ କନ୍ୟା କାହାଙ୍କୁ ବିଭା ଦେବା ରାଜାଘରକୁ ଏ ଯୋଗ୍ୟ ॥
ଏମନ୍ତ ବିଗୃରି ବର ଖୋଜିବାକୁ ଗଲେ ବେନି ଭାଇଗୋଟି ।
ତକ୍ଷକନ୍ଧ୍ୟା ନାମେ କଟକ ହୋଇଣ ବାଳୀ ନୃପତିକି ଭେଟି ॥
ଋଷିଙ୍କି ଦେଖି ରାଜନ ମହାସୁଖୀ ବୋଇଲେ ଋଷିଏ ବସ ।
କେଉଣ କାର୍ଯ୍ୟେ ମୋ ପାଶକୁ ଅଇଲ କହିବା ଏଥି ସନ୍ଦେଶ ॥
ମୁନି ବୋଇଲେ ଅଧିକ କଥା ନାଥ ବିଗୃରି କହୁଛୁଁ ଏତେ ।
ଦୁହିତା ଗୋଟିଏ ଆମ୍ଭର ଅଛଇ ପ୍ରଦାନ କରିବା ତୋତେ ॥
ରମ୍ଭା ମେନକା ପଟାନ୍ତର ନୁହନ୍ତି ଦେଖିବାକୁ ଶୋଭାକର ।
ନବଖଣ୍ଡ ପୃଥ୍ୱୀ ଭିତରେ ତା ପାଇଁ ଖୋଜି ନ ପାଇଲୁଁ ବର ॥
ଅତି ସୁନ୍ଦରୀ ସୁକୁମାରୀ ଶରୀର ପଦ୍ମଫୁଲ ପ୍ରାୟେ ମୁଖ ॥
ମନକୁ ଯେବେ ଆସିବ ମହାରାଜା କନ୍ୟାକୁ ଯାଇ ତୁ ଦେଖ ।
ସେ ଘେନ ଆମ୍ଭେ ଯେ ତୁମ୍ଭକୁ ଅଇଲୁଁ କହିଲୁ ଉଚିତ ବାଣୀ ॥
ଶୁଣିକରି ମହା ସନ୍ତୋଷ ଲଭିଲା କିଷ୍କିନ୍ଧ୍ୟାର ନୃପମଣି ॥

କୋଇଲ ମୁଁ ତୁମ୍ଭ ଗ୍ରାମୁରେ ଋଷି ହେ ଅଧିକ ଜ କହିବ କ ।
ସତେ ଯେବେ ତୁମ୍ଭ ଝିଅ ବାଖି ଦେବ ଏକଥା ପ୍ରମାଣଟିକ ॥
ମୁନି ବୋଇଲେ ନ ହେଲା ଇଚ୍ଛା ଥିଲେ କପାଇଁ ଅଇଲୁଁ ଆମ୍ଭେ
ଏହିକ୍ଷଣି ଏବେ ବଜେ କବ ଯାଇ କନ୍ୟା ଦେଖି ଆସ ତୁମ୍ଭେ ॥
ମୁନିଙ୍କର ବାଣୀ ଏସନକ ଶୁଣି ବନ୍ଧନ ଉଠିଲା ବାଳୀ ।
ଦ୍ରବ୍ୟ ସଜ ହୋଇ ଶୁଭବେଳେ ଯାଇ ଋଷିଙ୍କ ମଠରେ ମିଳି ॥
ବସିବାକୁ ଦ୍ରବ୍ୟ ଆସନ ପାଇଣ ଲଭିଲା ପରମସୁଖ ।
ମୁନି ବୋଇଲେ ଦୁହିତାକୁ ଆମ୍ଭର ଏବେ ଯାଇ ତୁମ୍ଭେ ଦେଖ ॥
ଏତେକ ବୋଲିଣ ବର୍ଣ୍ଣମାଳା ଆଣି ଦୁହିତା ହସ୍ତରେ ଦେଲେ ।
ଆଜହୁଁ ଏ ତୋର ଭର୍ତ୍ତା ହୋଇଲାଟି ବରଣ କର ବୋଇଲେ ॥
ଶୁଣି ବେଙ୍ଗବତୀ ହୋଇ ତୋଷମତି ପୁଷ୍ପମାଳା କରେ ଧରି ।
ବାଳୀ ନୃପତିଙ୍କ କଣ୍ଠେ ଲମ୍ବାଇଲେ ପାଦେ ପ୍ରଣିପାତ କରି ॥
ଦେଖି ନୃପସାଇଁ ମନେ ତୁଷ୍ଟ ହୋଇ ଋଷିଙ୍କି ଗୁହିଁ ବୋଇଲା ।
ଆଜହୁଁ ନିଶ୍ଚେ ଏହି ଝିଅ ତୁମ୍ଭର ମୋହର ପତ୍ନୀ ହୋଇଲା ॥
ଏହାଙ୍କୁ ଦେଖି ମୁଁ ମନେ ହେଲି ସୁଖି ଅସ୍ଥିର ହେଉଛି ଦେହ ।
ଶୁଭଲଗ୍ନ ବେଳେ ବାଖି ଅନୁକୂଳ କେଉଁ ଦିନେ ହେବ କହ ॥
ମୁନି ବୋଇଲେ ଆଜହୁଁ ଅଷ୍ଟମାସେ ମଧ୍ୟଭାଗ ଗ୍ରୁଡ଼ି ଦେବା ।
ଧନୁମାସ ଅନ୍ତେ ମକର ପଶନ୍ତେ ପଞ୍ଚମୀ ଦିନଟି ବାଖି ॥
ଏସନକ ବାଣୀ ବାଳୀରାଜା ଶୁଣି ହରଷିତ ହେଲା ମନେ ।
ମୁନିଙ୍କୁ ମେଲାଣି ମାଗି ନୃପମଣି ଚଳିଲା ନିଜ ଭୁବନେ ॥
ଏଥିଅନ୍ତରେ ଯୋକାଏ ଦିନଯାନ୍ତେ ଶୁଣିବା ଦ୍ରବ୍ୟ ବାହାଣୀ ।
ଦୁହିତା ଗୋଟିକି ମଠରେ ଗ୍ରୁଡ଼ିଣ ସନ୍ଧ୍ୟା କରି ଗଲେ ମୁନି ॥
କୋଧିତ ଉଞ୍ଚର ତମ୍ଭା ଗଡ଼ୁ ସହିତେ ସମସ୍ତ ଘେନିଲେ କର ।
ସମୁଦ୍ର ତଟକୁ ତପ କରି ଗଲେ ବ୍ରହ୍ମାଙ୍କ ବେନି କୁମର ॥
ଯୋକାଏ ଦିନ ଅନ୍ତେ ହୋଇଯାନ୍ତେ ବାଳୀ ନାମେ ନରବର ।
ବେଙ୍ଗବତୀ କଥା ମନରେ ପଡ଼ନ୍ତେ ହେଲା ଅତ୍ୟନ୍ତ ଅଧୀର ॥
କୋଇଲା ଆମ୍ଭେ ଦୁରୁ ବିପଣି କଲୁଁ ଏତେଦିନେ ମନେ ପଡ଼ି ।
ଆଜକୁ ଏକମାସ ପୂର୍ଣ୍ଣ ହୋଇଲା କନ୍ୟାକୁ ଅଇଲୁଁ ଗ୍ରୁଡ଼ି ॥

ଏବେ ଯାଇ ତାକୁ ଦେଖନ୍ତେ ଦେଖିବା ଇଚ୍ଛାଟ ହେଉଛୁ ମନ ॥
ଦଣ୍ଡିମାଳା ଦେଇ ସୁନ୍ଦରୀ କରିଛୁ ନିଜ ବିଗ୍ରହର ଆନ ॥
ଏତେ ବୋଲି ରାଜା ଉଦବେଗ ହୋଇ ଗମନ କଲା ହଛାଟେ ।
ନହୁଁ ନହୁଁ ଯାଇଁ ପ୍ରବେଶ ହୋଇଲା ଋଷିଙ୍କର ଉବ୍ୟମରେ ।
ସନ୍ଧ୍ୟା କରିବାକୁ ସମୁଦ୍ରତଟକୁ ଯାଇଛନ୍ତି ବେଦ ଋଷି ।
ବେଙ୍ଗଦତ୍ତ କନ୍ୟା ପ୍ରବେଶ ହୋଇଣ ମଠଦ୍ୱାରେ ଅଛୁ ବସି ॥
କେଶ କୁରୁଳାଇ ଢବଂବେଶ ହୋଇ ନୟନେ କଜ୍ଜଳ ରେଖ ।
ଦକ୍ଷିଣ କରେ ଦର୍ପଣ ଦେନ ବାମା ଗୃହୁଁ ଅଛୁ ପଦ୍ମମୁଖ ॥
ଏମନ୍ତ ତାହା ଲୋଚନରେ ଦେଖିଲ ବାଳୀ ନାମେ ନୃପବର ।
ମଦନ ବାଣ ଦ୍ରୁତଗତେ ବାଜିଣ ତନୁ ହେଲା ଜର ଜର ॥
ଭାମରେ ଆରତ ହୋଇ ନରନାଥ ବିଗ୍ରହ କରୁଛୁ ବସି ।
ଆଜ ମୁଁ ଏହାକୁ ରମଣ କରିବି ନ ପାରଇ ମନୁମୂର୍ତ୍ତି ॥
କହୁଁ କହୁଁ ରାଜା ଅଜ୍ଞାନ ହୋଇଲା ବୃତ୍ତିଳା କାମ ସଲିଳେ ।
ଲଜ ଗ୍ଲାନ୍ତ ସେ ଯେ ବେନ ଭୂଟେକ ଭଞ୍ଜି କନ୍ୟାକୁ ଧରିଲ ବୋଲେ ॥
ବିବିଧ ରଙ୍ଗେ ପରବନ୍ଧ କରନ୍ତେ ସରିଲା ସୁରତ ରସ ।
ବାଳୀ ବୀର୍ଯ୍ୟରେ ସେ ଋଷିଙ୍କ ନନ୍ଦନୀ ହୋଇଲାକ ଗର୍ଭବାସ ॥
କନ୍ୟାକୁ ଭୋଗ କରିଣ ମହାରାଜା କଟକକୁ ବିଜେ କଲା ।
ଏମନ୍ତ ସମୟେ ସୂର୍ଯ୍ୟ ଦେବତା ଯେ ମେରୁ ଉହାଡ ହୋଇଲ ॥
ତ୍ରିସନ୍ଧ୍ୟା ବିଧି ଷଟକର୍ମ ସାରିଣ ମଠକୁ ଅଇଲେ ଋଷି ।
ଦୁହିତା ଗୋଟିକ ଆଶ୍ୱାସନା କରି ବଞ୍ଚିଲେ ଦେଖ ଦନ ନଶି ॥
ଏଥୁ ଅନନ୍ତରେ ଏମନ୍ତ ସମୟେ କେତେକେହକ ଦନ ଗଲ ।
ଲଙ୍କାର ରାବଣ ରଥରେ ବସିଣ ଭ୍ରମଣକୁ ବିଜେ କଲା ॥
ଅନେକ ଦୂର ଯେ ଅରଣ୍ୟ କନ୍ଦର ବୁଲିଲାକ ଲଙ୍କସାଇଁ ।
ଉଦାର ମନ୍ଦର ଋଷିଙ୍କ ମଠରେ ପ୍ରବେଶ ହୋଇଲା ଯାଇଁ ॥
ଦେଖିରେ ମୁନି ଦୁହିତା ବୋଲେ ଯେନ ଶରଧା ଯୁବତେ ବସି ।
ଏମନ୍ତ ସମୟେ ଦଶଗ୍ରୀବ ରାୟେ ପ୍ରବେଶ ହୋଇଲା ଆସି ॥
କନ୍ୟାକୁ ଦେଖିଣ ଲଙ୍କାର ରାବଣ ହରଷ କଲାକ ମନ ।
ବୋଇଲ ମୁନିଏ କଅଁ ଏ ନନ୍ଦିବା ଭକତ ମୋହର ଯେଣ ॥

ଏ ତୁମ୍ଭ ନନ୍ଦନୀ ଜଗତମୋହନୀ ମଞ୍ଜୁଭୁବନକୁ ଶୋଭା ।
କେମନ୍ତ ପ୍ରକାରେ ଏଡ଼ିଅ ଗୋଟିକୁ କାହାକୁ କରିଛ ବିଭା ॥
ଋଷି ବୋଇଲେ ଏ ବିଭା ହୋଇ ନାହିଁ ଦେଇଛୁ ବରଣମାଳ ।
କିଷ୍କିନ୍ଧା ନାମେ କଟକ ନୃପତି ବାଳୀ ନାମେ ମହୀପାଳ ॥
ରାବଣ ବୋଇଲେ ବାଳୀ ନୃପତିଙ୍କି ପ୍ରଦାନ କରିବ ଯେବେ ।
କେବଳ ମାତ୍ର ସେ ବରିଅଛୁ ପିନା ମୋତେ ବିଭାହଅ ଏବେ ॥
ସ୍ୱର୍ଗ ମର୍ତ୍ତ୍ୟ ପାତାଳପୁର ସମସ୍ତରେ ପ୍ରକାଶ ମୋହର ବାନା ।
ଏଡ଼େ ନୃପତି ମୁଁ ଥାଉଁ ଥାଉଁ ତୁମ୍ଭେ ବାଳୀକୁ ଦେଉଛ କନ୍ୟା ॥
ଋଷି ବୋଇଲେ ତାକେ ନ ଛାଡ଼ି କରିବ ପ୍ରମାଣ ହୋଇଛୁ ଯେବେ ।
କେବଳ ହସ୍ତ ଧରିବାକୁ ରହିଛୁ ସତ୍ୟ ମନାଇଛୁ ପୂର୍ବେ ॥
ତା ଶୁଣି ରାବଣ ବୋଲଇ ବଚନ କେଉଁ ଦିନ ହେବ ବିଭା ।
ଋଷି ବୋଇଲେ ମାସ ଗୃହ ପାଞ୍ଚ ଯେ ମନ ସ୍ଥିର କରିଥିବା ॥
ଧନୁମାସ ଅନ୍ତେ ମକର ପଶନ୍ତେ ପଡ଼ିବ ଅଷ୍ଟମୀ ତିଥି ।
ସେହିଦିନ ଆସି ବିଭା ହୋଇବ ଯେ କନ୍ୟାକୁ ବାଳୀ ନୃପତି ॥
ଶୁଣି ରାବଣ ହରଷ ହୋଇ ପୁଣ ମନେ ବିଚାରି ବୋଇଲା ।
ବିଭାଦିନ କଥା ବାରତା ପାଇଲି ଏହି ତ ଭଲ ହୋଇଲା ॥
ଅବଶ୍ୟ ସେ ଦିନ ମାୟାରୂପ ଧରି ଏଥକୁ ଆସିବି ମୁହିଁ ।
ବାଳୀ ନୃପତି ଏଠାକୁ ନ ଆସୁଣୁ ଆଗେ ଯିବି ବିଭା ହୋଇ ॥
ଏତେ ବୋଲି ରାଜା ଋଷିଙ୍କି ବୋଇଲା ଅବଧାନ କର ତୁମ୍ଭେ ।
କନ୍ୟା ତ ନ ଦେଲ ଦୟା ରଖିଥିବ ବାହୁଡ଼ି ଯାଉଛୁଁ ଆମ୍ଭେ ॥
ଋଷି ବୋଇଲେ ବଳନ୍ତ କାହିଁ ପାଇଁ କରୁଅଛ ନୃପବର ।
ଆମ୍ଭ କଲ୍ୟାଣ ପ୍ରାପତ ହେଉ ତୋତେ ଯୁଗେ ଯୁଗେ ରାଜ୍ୟ କର ॥
ଶୁଣିଣ ରାବଣ ହରଷ ହୋଇଣ ଲଙ୍କାକୁ ବାହୁଡ଼ି ଗଲା ।
ପାତ୍ର ମନ୍ତ୍ରିମାନେ ସନ୍ନିଧେ ବସାଇ ଗୁପତ ବିଚାର କଲା ॥
ବୋଇଲା ଉଦର ମନ୍ଦର ବୋଲି ଯେ ବ୍ରାହ୍ମଣଙ୍କର ବେଦଶିଷ୍ୟ ।
ତାହାଙ୍କର ଏକ ଦୁହିତାଏ ଅଛୁ ମନ୍ଦମା କହିବ କସ ॥

ଅଟେ ସୁଶୋଭନା ନବଯଉବନା ମଦନ ଭଣ୍ଡାର ବାମା ।
ମୂର୍ଖଜନମାନେ ଦେଖିଲେ ଢଳିବେ ମୁଖ ତା ପୂର୍ଣ୍ଣ ଚନ୍ଦ୍ରମା ॥
ସେହି ଦ୍ରବ୍ୟ ନାମ ସ୍ଵର୍ଗ ଅପସରା ଋଷିଙ୍କ ମଠରେ ଥାଇ ।
ବାଳୀ ରାଜାଙ୍କୁ ସେ ପ୍ରଦାନ ହୋଇବ ବର୍ଣ୍ଣମାଳା ଅଛି ଦେଇ ॥

ଧନୁମାସ ଅନ୍ତେ ମକର ପଶନ୍ତେ ପଞ୍ଚମୀ ଦିନରେ ବନ୍ଧ ।
ସଭିଁର ମନରେ ଏ କଥା ଥିବଟି ଅବଶ୍ୟ ତାହାଙ୍କୁ ଯିବା ॥
ଏମନ୍ତ ବିଚାର କରି ଲଙ୍କେଶ୍ଵର ରହିଲା ମଉନ ହୋଇ ।
ଶ୍ରୀ ଜଗନ୍ନାଥଙ୍କ ଚରଣେ ଶରଣ ଧନକୃଷ୍ଣ ଦାସ କହି ॥

ଏଥିଅନ୍ତେ କଥା ଶୁଣ ଦ୍ରବ୍ୟଚନ୍ଦ୍ରେ ଅଷ୍ଟମାସ ପୂରିଗଲା ।
ପାତ୍ର ମନ୍ତ୍ରିଗଣ ସ୍ଵମୁଖ ହକାରି ରାବଣ ବିଚାର କଲା ॥
ବୋଇଲା ଋଷିଙ୍କ ଦୁହିତା ବିହାର କାଳ ଆସି ହେଲା ପୂର୍ଣ୍ଣ ।
କେବଳ ମୋତେରେ ସ୍ଵରାଦନ ଅଛି ଯିବାଟି କି ପରଦିନ ॥
ଶୁଣି ସୈନ୍ୟବଳ ହରଷ ସକଳ ପାତ୍ରମନ୍ତ୍ରି ଆଦିକରି ।
ବିହାର ଯୋଗାଡମାନ କରାଇଲେ ଆନନ୍ଦେ ଲଙ୍କାର ନାହିଁ ॥
ସୁପାଟ ପଲଙ୍କେ ନିଦ୍ରା ନ ମାଡ଼ଇ ରାବଣ ମନ ଉତ୍ସୁକ ।
ରଜନୀ ଶେଷ ଶଙ୍ଖଧ୍ଵନି ଶୁଭୁଛି ଉଠିଲେ ସକଳ ଲୋକ ॥

ଏକୁ ଆରେକ ହକାହକି ହୋଇଣ ଥଇଲେ ପୃଥିବୀ ଘୋଟି ।
ସିଂହଘୋଷ ପ୍ରାୟ ଶବଦ ଶୁଭିଲା ବାଦ୍ୟକାର ଦଶକୋଟି ॥
ପୁଷ୍ପକବିମାନେ ଚଢ଼ିଣ ରାବଣ ମିଳିଲା ସମୁଦ୍ରକୂଳ ।
ଏକାରଥକେ ସମସ୍ତେ ବସିଛନ୍ତି ଲଙ୍କାଗଡ ସୈନ୍ୟବଳ ॥

ଥୋକାଏକ ପଥ ଗମି ସେ ଦଇତ୍ୟ ହୋଇଲା ସାହେବ ପାରି ।
ଋଷିଙ୍କ ମଠ ନିକଟକୁ ଯାଇଣ ବାନର ମୂରତି ଧରି ॥
ରାବଣ ବୋଇଲା ନିଜରୂପମାନ ଗୋପ୍ୟକରି ସବୁ ଥାଅ ।
ବାଳୀରାଜା ମୂର୍ତ୍ତି ଆମ୍ଭେ ଧରିଅଛୁ ସଭିଏ ମର୍କଟ ହୁଅ ॥

ରାଜା ଆଜ୍ଞା ପାଇ ଆଠ ସୈନ୍ୟ ଯାଇ ହୋଇଲେ ବାନରବେଶ ।
ବାଳୀରାଜା ବେଶ ଧରିଣ ରାବଣ ଋଷିଙ୍କ ମଠେ ପ୍ରବେଶ ॥

ନିତ୍ୟ ଭଜନ ଯେ ହୋଇଲା ବର୍ତ୍ତମାନ ମଠରେ ଅଛନ୍ତି ଋଷି ।
ବେଦୀ ଗୋଟିଏ ନିର୍ମାଣ କରିଛନ୍ତି ବର କନ୍ୟା ଯହିଁ ବସି ॥
ନିଉନଭନଙ୍କୁ ମୂରତି କରିଣ ଅନାଉଅଛନ୍ତି ବାଟ ।
ଏତେବେଳଯାଏ ଏ ବାଳୀତ ନଇଲା ବିଭାର ବେଳ ନିକଟ ॥
ଏମନ୍ତ ସମୟେ ରାବଣର ବାଦ୍ୟ ଶୁଭିଲା ଅନେକ ଦୂରେ ।
ଋଷି ବିଚାରିଲେ ନୃପତି ଅଇଲେ ବନ୍ଧୁବାନ୍ଧବ ସଂଯୋଗରେ ॥
ଅସୁର ମାୟା ମର୍କଟ ବେଶ କାୟା ଜାଣି ନ ପାରିଲେ ମୁନି ।
ଦୁହିତା ଗୋଟିକି ସଜବାଜ କରି ବେଦୀରେ ବସିଲେ ଯେଣି ॥

ଆପଣେ ବ୍ରାହ୍ମଣ ଶାସ୍ତ୍ରକୁ ପଢ଼ିଣ ଉଚ୍ଚାରିଲେ ଗୋତ୍ରକୁଳ ।
ରାବଣ ବୋଇଲା ବେଗେ ହାତଯୋଡ଼ି ଯିବାକୁ ଉଚ୍ଛୁର ବେଳ ॥
ଶୁଣିଣ ଋଷି ମନରେ ହୋଇ ତୋଷି ଆନନ୍ଦେ ହୋଇଲେ ଭୋଳ ।
ବର କନ୍ୟା ହାତ କୁଶରେ ବାନ୍ଧିଣ ଶଙ୍ଖେ ଦେଲେ ପାଣି ତୋଳ ॥

ଲାଜାହୋମ ପୁଣି କରିବା ନିମନ୍ତେ ଘୃତ ଥୋଇଛନ୍ତି ଆଗେ ।
ଏମନ୍ତ ସମୟେ ବାଲୀରାଜା ବାଦ୍ୟ ଶୁଭିଲା ନିକଟ ମାର୍ଗେ ॥
ପୃଥ୍ୱୀ ଯାକ ଯେ ଘୋଟି ଆସୁଛନ୍ତି ବାନର ମର୍କଟ କୂଳ ।
ନବଖଣ୍ଡ ମହୀ ପ୍ରଳୟ ହେଲା କି ଘୋଟିଲା ସମୁଦ୍ରଜଳ ॥

ଥାଟ ମୁଣ୍ଡ ରହୁଁ ଅତି ଅସମ୍ଭବ ଆକାଶ ପଥ ଉଚ୍ଛୁଳି ।
ରାବଣ ବୋଇଲା ପ୍ରମାଦ ପଡ଼ିଲା ଅଇଲା ନୃପତି ବାଲୀ ॥
କି ବୁଦ୍ଧି କରିବ କେଉଁ ପଥେ ଯିବ ନ ଦିଶଇ ମୋତେ ବାଟ ।
କହୁଁ କହୁଁ ଆସି ନିକଟ ହୋଇଲା ବାନରମାନଙ୍କ ଥାଟ ॥
ସନ୍ନିପାତ ବ୍ୟାଧି ଘୋଟିଲେ ଯେମନ୍ତ ପୃଥ୍ୱୀ ଅନ୍ଧକାର ଦିଶି ।
ସମ୍ପଦଯାକ ହରାଇ ମରୁଅଛୁ କର୍ମର ଅବଳେ ଆସି ॥
ଛନ୍ନ ଛନ୍ନ ମନ ଅସ୍ଥିର ଜୀବନ ହୋଇଲା ବିଶ୍ରବା ବାଳ ।
ଚନ୍ଦ୍ରଦେବତାଙ୍କୁ ରାହୁ ଘୋଟିଲା କି ପ୍ରାପତ ହୋଇଲା କାଳ ॥
ଋଷିଙ୍କି ରାହୁଁ ବୋଇଲା ଲଙ୍କସାଇଁ ବିଳମ୍ବ ନ କର ତୁମ୍ଭେ ।
ଆଜ୍ଞା ଲାଜା ହୋମ କୁଶଗଣ୍ଠି ଫେଡ଼ ବିଜୟ କରିବୁଁ ଆମ୍ଭେ ॥

ଋଷି ବୋଇଲେ ତୁ ମନ ଥିର କରି ଦଣ୍ଡେମାତ୍ର ରାଜା ଥିବୁ ।
ହସ୍ତ କୁଶବଣ୍ଡି ନୁହଇ ଫିଟାଇ କେମନ୍ତେ ନୃପତି ଯିବୁ ॥
ରାବଣ ବୋଇଲା ଆହେ ପ୍ରଭୁ ଋଷି ଆମ୍ଭର ବଚନ ଶୁଣ ।
ଯେତେବେଳେ କନ୍ୟା ସମର୍ପି ଦେଲଣି ତୁମ୍ଭର ଅଛୁ କି ପଣ ॥

ଏତେ ବୋଲି ତହୁଁ ଉଦବେଗ ହୋଇ ଉଠିଲେ ସେ ଲଙ୍କନାଥ ।
କରୁଁ କୁଶଗଣ୍ଠି ଛୁଣ୍ଡାଇ ପକାଇ ବଜେକଲା ଦିବ୍ୟରଥ ॥
ଅସୁର ବଳକୁ ରାବଣ ବୋଇଲା ସମସ୍ତେ ରଥରେ ବସ ।
ଏଠାରେ ତୁମ୍ଭେ ବିଳମ୍ବ କଲେ ଥାଉ ଆମ୍ଭଙ୍କୁ ନାହିଁ ଟି ଯଶ ॥

ଏତେ ବୋଲି ରାଜା କନ୍ୟା ହସ୍ତ ଧରି ପୁଷ୍ପକବିମନେ ବସି ।
ଝଟକବିଜୁଳି ପ୍ରାୟେ ହୋଇ ରଥ ଅନ୍ତର୍ଦ୍ଧ୍ୟାନେ ଗଲା ଖସି ॥
ଏମନ୍ତ ସମୟେ ବାଳୀ ନୃପତି ଯେ ପ୍ରବେଶ ହୋଇଲା ଘରେ ।
ଋଷିଙ୍କି ବୋଇଲା କନ୍ୟା ଆଣି ମୋତେ ବିଭା କର ଧାଡକାରେ ॥

ମୁନି ବୋଇଲେ କି କଥା କହୁଅଛ ବାତୁଳ ହେଲ କି ତୁମ୍ଭେ ।
କେତେ ବଳୀ ତୁମ୍ଭେ ପୃଥ୍ୱୀରେ ଅଛ କି ଜାଣି ନ ପାରିଲୁ ଆମ୍ଭେ ॥
ଏହିକ୍ଷଣି ବାଳୀ ନୃପତି ଗୋଟାଏ ରଥକେ ଚଢ଼ି ଅଇଲା ।
ଦାନବବଳ ଲୁଚିଏ ଯେନଆସି କନ୍ୟାକୁ ବିଭା ହୋଇଲା ॥
ଏହିକ୍ଷଣି ସେ ଯେ ନମେଷେ ଯାଇଛି ତୁ ପୁଣି ଅଇଲୁ ଧାଇଁ ।
ଏକା ଝିଅକୁ କେତେକ ବିଭା ଦେବା ଅଧିକ ଆଉ ତ ନାହିଁ ॥

ବାଳୀ ବୋଇଲା ସେ କେମନ୍ତ ଦିଶଇ ଚିହ୍ନି ନ ପାରିଲ ତୁମ୍ଭେ ।
ମୁନି ବୋଇଲେ ସେ ତୁମର ସ୍ୱରୂପ ଯାହା ଦେଖିଅଛୁଁ ଆମ୍ଭେ ॥
ତୋହରି ନଖ ତେ ହରି ଦିବ୍ୟମୁଖ ତୋହର ନାଶିକା ସଞ୍ଚ ।
ତୋହର ଶିର ତୋହର କର ପାଦ ଅଙ୍ଗୁଳି ଗୁଡ଼ାକ ଧଞ୍ଚ ॥
ତେଣୁକରି ସିନା ପରତେ ପାଇଲୁଁ କନ୍ୟାଗୋଟି କଲୁ ବିଭା ॥
ଏଥକୁ ତୁମ୍ଭର ଯେମନ୍ତ ଯୋଗାଇ ସେହିମତି ଆଜ୍ଞା ଦେବା ॥

ଯେତେବେଳେ କନ୍ୟା ପ୍ରଦାନ କଲି ମୁଁ କୁଶଗଣ୍ଠି ଅଛୁପଡ଼ି ।
ଛନ୍ନ ଛନ୍ନ ମନ କରିଣ ନୃପତି ଉଠିଲା ଆସନ ଛାଡ଼ି ॥

ଲଜାହୋମଠାରୁ କିଛିହେଁ ନ କଲା ଉଚସ୍ତ ହୋଇଲା ମନ ।
ଧାଡିକାରେ ଯାଇଁ ରଥରେ ବସିଲା କନ୍ୟାକୁ କୋଳେ ଘେନଣ ॥
ଆଠ ସୈନ୍ୟ ତାର ଯେତେ ଆଣିଥିଲା ଗୋଟିଏ ନ ଗଲା ଗ୍ଳନ୍ତି ।
ଝଟକ ବିଜୁଳୀ ପ୍ରାପ୍ତ ହୋଇ ରଥ ଶୂନ୍ୟପଥେ ଗଲା ଉଡ଼ି ॥

ବାଲୀ ବୋଇଲା ଯା କହିଲ ପ୍ରକୃତ ପ୍ରମାଣ କହିଲୁଁ ଆମ୍ଭେ ।
ରାବଣ କନ୍ୟାକୁ ବଶ୍ୟ ହୋଇଗଲା ଜାଣି ନ ପାରିଲ ତୁମ୍ଭେ ॥
ମୁନି ବୋଇଲେ ସେ ଅସୁରଙ୍କ ମାୟା କିଛି ନ ପାରିଲୁଁ ଜାଣି ।
ଦୁହିତା ଗଲା ଯେ ତୋତେ ନ ପାଇଲୁଁ କି ବୁଦ୍ଧି କରିବା ପୁଣି ॥

ବାଳୀ ଯେ ବୋଇଲା ରଥ ଯେ ତାହାର କେତେ ଦୂର ଯାଇଥିବ ।
ପନ୍ତିଲେ ଭେଟରେ ଛଡ଼ାଇ ଆଣିବ ନୋହିଲେ ଗଲେ ତ ଯିବ ॥
ଏତେ ବୋଲି ରାଜା ବିଶ୍ୱମୂର୍ତ୍ତି ହୋଇ ବିକ୍ରମ ଗତି ଯେ କଲା ।
ଏକ ଚରଣ ମାରିଣ ନରପତି ପଚୃଶ ଯୋଜନ ଗଲା ॥
ସେଠାରେ ପୁଣି ଯେ ଅଳପ ବିଶ୍ରାମି ଦୃଷ୍ଟି ଦେଲା ପୁଣି ଆଗେ ।
ଦେଖିଲେ ରାବଣ ରଥ ଯାଉଛି କୋଡ଼ିଏ ଯୋଜନ ଲାଗେ ॥

ସେଠାରୁ ପୁଣି ସେ ଆରକ ଚରଣ ମାଇଲା ବାଳୀ ନୃପତି ।
ଝାମ୍ପ ଦେଇ ଯାଇ ରଥରେ ବସନ୍ତେ ଡରିଲା ପୌଲସ୍ତ୍ୟ ନାଥ ।
କନ୍ୟା ବାମହସ୍ତ ଧରିଣ ଆନନ୍ଦେ ବସିଅଛି ଦଶଶିର ।
ଦକ୍ଷିଣ କର ଧରିଣ ବାଳୀ ରାଜା ଓଟାରିଲା ଆଣ୍ଠୁ କରି ॥

ବୋଇଲା ଆରେ ରାବଣ ଆଟୁଁ ମଲୁ କ୍ଷୟ ଯିବ ଦଶମଥା ।
ମୋହ ଘରଯାକୁ ଚୋରାଇ ନେଉଛୁ ଏ ତୋର କେମନ୍ତ କଥା ॥
ବର୍ଣ୍ଣମାଳା ଦେଇ ଯେଉଁ କନ୍ୟା ମୋତେ ବରିଅଛି ଆଗକର ।
ତୁ ଯାଇଁ କେମନ୍ତେ ମାୟା ରୂପ ଧରି କପଟେ ଆଣିଲୁ ହରି ॥
ଏତେ ବୋଲି ରାଜା ଗୁଡ଼ ଗୁଡ଼ ବୋଲି ଓଟାରିଲା କନ୍ୟା ବାହା ।
ରାବଣ ବୋଇଲା ମୁଁ କାହିଁ ଗୁଡ଼ଇଁ ବଶ୍ୟ ହୋଇଅଛୁ ଯାହା ।

ବାମ କର ଧରି ନରାଶ କରିଣ ଓଟାରୁଛି ଲଙ୍କାପାଇଁ ।
ଦକ୍ଷିଣ କର ଧରିଣ ବାଳୀ ରାଜା କନ୍ୟାକୁ ଓଟାରେ ତହିଁ ॥

ଦୁଇ ଆଡ଼େ ଦୁଇ ହସ୍ତକୁ ଧରଣ ଓଟାରନ୍ତି ମହୀପାଳ ।
ମହାକ୍ରମ ପାଇ ବେଙ୍ଗମତୀ କନ୍ୟା ହୋଇଲାକ ବେଦନପାଳ ॥
ଖଣ୍ଡେକ ରାବଣ ହସ୍ତରେ ରହିଲା ଆର ଖଣ୍ଡ ନେଲା ବାଲୀ ।
ଧରାଧରି ହୋଇ ଦୁଇ ରାଜାଙ୍କର ଲାଗିଲା ବଷମ କଳି ॥
ଯେଉଁ ପୁତ୍ର ଗୋଟି ବେଙ୍ଗବତୀ କନ୍ୟା ଗର୍ଭରେ ଧରିଣ ଥିଲା ।
ବେଦନଫଳ ହୋଇ ପିବାମାତ୍ରକେ ସେ ଭୂମିରେ ଛଳି ପଡ଼ିଲା ॥
ଏସନକ ଗଣ୍ଡ ଦେଖି ବେଦପତି ମରାଳ ଚଢ଼ି ଥଇଲେ ।
ତେତିଶକୋଟି ଦେବଗଣ ଯେଜଣ-ରାବଣ ପାଶେ ହୋଇଲେ ॥
ଯମ କୁବେର ପବନ ବୈଶ୍ୱାନର ବୃହସ୍ପତି ଆଦି ଥାଇ ।
ବେନି ରାଜାଙ୍କର କଳିଦ୍ୱନ୍ଦ୍ୱ ଦେଖି ସମସ୍ତେ ଆଇଲେ ଧାଇଁ ॥
ରାବଣ ବୋଇଲା ଆହେ ବେଦ ବ୍ରହ୍ମା କେମନ୍ତ ବୁଝିଲ ତୁମ୍ଭେ ।
ନିକଟେ ଆମ୍ଭର ଭାରଯା ଏହାକୁ ବନ୍ଦୀ ହୋଇଅଛୁଁ ଆମ୍ଭେ ॥
କାହିଁପାଇଁ ଆସେ ବାଲୀ ରାଜା ମୋତେ ଏଡ଼େ ଲଜ୍ଜାବାଦ ଦେଲା ।
ସ୍ତ୍ରୀ ହତ୍ୟା କରି ପାତକଅରଜି କେହୁଣି ଆଡ଼େ ନୋହିଲା ॥
ବାଲୀ ବୋଇଲା ରେ ପାମର ରାବଣ ମୋହର ଭାରଯା ସେହି ।
ହରିଲୁ କନ୍ୟାକୁ କପଟେ ଆଣିଲୁଁ ଅଧର୍ମ ଅର୍ଜିଲୁ ତୁହି ॥
ଆବର ବିଶେଷେ ମୋହର ବୀର୍ଯ୍ୟରେ ହୋଇଅଛି ଗର୍ଭବାସ ।
ଦେବତାଗଣ ବିଚାରି କହ ତୁମ୍ଭେ କାହାର ଅଟେ ଏ ଶିଷ୍ୟ ॥
ବ୍ରହ୍ମା ବୋଇଲେ କଳିଦ୍ୱନ୍ଦ୍ୱ ନ କର ବେନିରାଜା ତୁମ୍ଭେ ଥାଅ ।
ମଧ୍ୟସ୍ଥପଣେ କଥା ଏକ କହିବା ଯେ ଯାହାରେ ବୋଧ ପାଅ ॥
ବେଗରେ କନ୍ୟା ଯେ ବର୍ଣ୍ଣମାଳା ଦେଇ ବରିଅଛି ବାଲୀ ରାଜା ।
ଏବେ ପୁଣି ତାକୁ ରାବଣ ଆଣିଲା କପଟେ ହୋଇଲା ସଜା ॥
ବାଲୀ ମୁଖ ଚାହିଁ ବ୍ରହ୍ମାଏ ବୋଇଲେ ମୃତ୍ୟୁ ଶବ ଖଣ୍ଡି ଥୁଅ ।
ଯହିଁପାଇଁ ଏବେ କନ୍ୟା ନାଶ ଗଲା ତୋହର ପୁତ୍ରକୁ ତୁ ନିଅ ॥
ଏ ପୁତ୍ର ତୋତେ ବଡ଼ ଗୁଣେ ଆସିବ ପ୍ରକାଶ ହୋଇବ ଧର୍ମ ।
ଅଙ୍ଗଚାରୀ ଯେବେ ବାହାର ହୋଇଲା ଅଙ୍ଗଦ ଦେଲୁଟି ନାମ ॥

ବ୍ରହ୍ମାଙ୍କର ବାଣୀ ଏସନକ ଶୁଣି ବାଳୀ ରାଜା ମନେ ତୋଷ ।
ମୃତ୍ୟୁ ଶବ ଭ୍ରାନ୍ତି ପୁତ୍ର ଗୋଟି ଘେନି ମିଳିଲା ଆପଣା ଦେଶ ॥
ବ୍ରହ୍ମା ମୁଖ ଚାହିଁ ରାବଣ ବୋଇଲା ଆଜ୍ଞା କରିବା ଏବେ ।
ଏ କନ୍ୟା ଗୋଟିକ ଦେବତା ହୋଇ ସେ ଜୀଆଇଁ ନ ଦେବ ଯେବେ ॥
ନିଶ୍ଚୟ ତୁମ୍ଭର ନିଜ ପଦ ଫେଡ଼ି ସମ୍ପୂର୍ଣ୍ଣେ କରିବା ନାଶ ।
ଯଦ୍ଧନ୍ତକାଳେ ଦେବତାମାନେ ତୁମ୍ଭେ ମୋତେ ନ ଦେବଟି ଦୋଷ ॥

ବ୍ରହ୍ମାପଦ ଫେଡ଼ି ଅନ୍ୟକୁ ଦେବଇଁ ଇନ୍ଦ୍ର ପଦ ଯିବ କ୍ଷୟ ।
ତେତିଶକୋଟି ଦେବତାଙ୍କୁ ମାରିବା ମୋ ହାତର କାହାକୁ ଭୟ ॥
ଶୁଣି ବେଦପତି ମନେ ଲଜ୍ଜ୍ୟାନ୍ତ ବୋଇଲେ କନ୍ୟାକୁ ଯୋଡ଼ ।
ସମଦେବତାଙ୍କୁ ଆଜ୍ଞାଦେଲେ ତୁମ୍ଭେ ସଞ୍ଜୀବନୀ ମନ୍ତ୍ର ପଢ଼ ॥
ବିଶ୍ୱକର୍ମାକୁ ବେଦବ୍ରହ୍ମା ବୋଇଲେ କନ୍ୟାକୁ ଯୋଡ଼ ତୁ ବସି ।
ଶତୁଁ ଶତ ଗୁଣେ ସୁନ୍ଦରୀ ହୋଇବ ଦେଖିଲେ ଭୁଲିବେ ଋଷି ॥
ବ୍ରହ୍ମାଙ୍କର ବାଣୀ ଏସନକ ଶୁଣି କନ୍ୟାର ଧଇଲେ ହସ୍ତ ।
ବେନିଫାଳ ନେଇ ଏକଠାରେ ଥୋଇ ଉପରେ ଢାଙ୍କିଲେ ନେତ ॥

ମାନସିକେ ବସି ଭିତରେଣ ପଶି ସମସ୍ତ ନିର୍ମାଣ କଲା ।
ସୁନ୍ଦରପଣେ ପୃଥ୍ୱୀରେ ଲକ୍ଷ୍ୟ ନାହିଁ ବ୍ରହ୍ମାଣ୍ଡ ଯାକ ମୋହିଲା ॥
ପବନକୁ ଚାହିଁ ବ୍ରହ୍ମା ଆଜ୍ଞା ଦେଲେ ଜୀବନ ହୋଇ ତୁ ପଶ ।
ଆମ୍ଭମାନଙ୍କର କୀରତି ରହିବ ଲକ୍ଷପତି ପାଉ ଯଶ ॥

ଶୁଣି ପବନ ଚତୁର୍ମୁଖ ବଚନେ ପଶିଲା କନ୍ୟା ଶରୀରେ ।
ସଞ୍ଜୀବନୀ ମନ୍ତ୍ର ପଢ଼ିଲା ମାତ୍ରକେ ସୁନ୍ଦରୀ ଉଠିଲା ଖରେ ॥
ଦେଖିଣ ରାବଣ ହରଷିତ ହୋଇ କୋଡ଼ରେ ଧଇଲା ନେଇ ।
ମୁଖେ ଚୁମ୍ବ ଦେଇ ପ୍ରଶଂସା କଲା ସେ ଦେବତାମାନଙ୍କ ଚାହିଁ ॥

ବ୍ରହ୍ମାଙ୍କ ମୁଖକୁ ଅନାଇ ବୋଇଲା ନାଥ ତୁମ୍ଭେ ପିତାମହି ।
ଏ କନ୍ୟା ଗୋଟିକି କି ନାମ ଦେବାଟି ବିଚାରି ଆମ୍ଭଙ୍କୁ କହ ॥

ବ୍ରହ୍ମା ବୋଇଲେ ଯେ ଶୁଣ ଲଙ୍କପତି ଯୁଗେ ଯୁଗେ କଥା ଥାଉ ।
ଅତି ମନ୍ଦଯୋଗେ ପ୍ରାପତ ହୋଇଲା ମନ୍ଦୋଦରୀ ନାମ ହେଉ ॥

ହେଉ ହେଉ ବୋଲି ସମସ୍ତେ ବୋଇଲେ ହରଷିତ ହେଲେ ସର୍ବେ ।
ମନ୍ଦୋଦରୀ କନ୍ୟା ଘେନିଣ ରାବଣ ଲଙ୍କାରେ ପ୍ରବେଶ ହୁଏ ॥
ଦେବତାମାନଙ୍କୁ ମେଲାଣି ଦେଇଣ ରହିଲେ ଆପଣା ବାସ ।
ଶ୍ରୀ ଜଗନ୍ନାଥଙ୍କ ଚରଣେ ଶରଣ ଅରକ୍ଷିତ କୃଷ୍ଣଦାସ ॥

---

ଶ୍ରୀକୃଷ୍ଣ ବୋଇଲେ ଶୁଣ ଧନପତି ତୁ ଯାହା ପୁଚ୍ଛିଲୁ ପୂର୍ବେ ।
ତେଣୁକରି ତୋତେ ବିସ୍ତାର କହିଲୁଁ ପ୍ରତେ ପାଇଲୁ କି ଏବେ ॥
ଏକା କନ୍ୟାକୁ ବେନିଖଣ୍ଡ କରିଣ ନେଇଥିଲେ ବେନି ରାଜା ।
ତେଣୁ କରି ହାଦେ କେମନ୍ତ ପ୍ରକାରେ ବିଭାଇ ମାଇପ ସଜା ।
ଶାସ୍ତ୍ର ବାଣୀ ଶୁଣି ମୋହ ମାୟା ଜିଣି ଅଙ୍ଗ ପାପ କର କ୍ଷୟ ।
ଏ ଧର୍ମ ଶାସ୍ତ୍ରର ଅପାର ମହିମା ଶୁଣ ଶ୍ରଦ୍ଧା କରି ଥୟ ॥
ଶ୍ରୀକୃଷ୍ଣ ବଚନେ କୁବେର ବୋଇଲା ଧ୍ୟାନ କର ମୋତେ ହରି ।
ସଂସାର ସିନ୍ଧୁକୁ ନଉକା ଦେଲ ଯେ ନିଶ୍ଚିନ୍ତେ ହୋଇଲେ ପାରି ॥
ଏବେତ ମୋହର ସଂଶୟ ଫିଟିଲା ଶୁଣିମା ଦେବାଧିରାଜା ।
ବିଧାତା କରଇ ଏମନ୍ତ ପ୍ରକାର ବିହାଇ ମାଇପ ସଜା ॥
ଶ୍ରୀକୃଷ୍ଣ ବୋଇଲେ ଶୁଣ ଧନପତି ବିହାଇ ମାଇପ ଗୁଣ ।
ଯୁଧିଷ୍ଠି ଦେବଙ୍କ କଥାକୁ ମନ ହର ଲୟ କରି ତୁହି ଶୁଣ ॥
ସେହି ମହାଧର୍ମ ଯେ ଅତିଉତ୍ତମ କରିବେ ଯଜ୍ଞ ସମ୍ଭାର ।
ଷୋଳଦାନଯାଏ ଭଣ୍ଡାର ମୁକୁଳା କରିଥିବୁ ତୁ କୁବେର ॥
ସେ ଆମ୍ଭର ଜେଷ୍ଠ ଅଟନ୍ତି ଗରିଷ୍ଠ ନାମ ଯେ ଧର୍ମଯୁଧିଷ୍ଠି ।
ତେଣୁ କରି ଆମ୍ଭେ ତାହାଙ୍କ ଚରଣେ ଦଣ୍ଡବତ କରୁଁ ନିତି ॥
ପ୍ରଭୁଙ୍କ ବଚନେ କୁବେର ବୋଇଲା ଶୁଣ ତୁ ନନ୍ଦର ବାଛି ।
ଆଉ କାହାକୁ ସଂସାର ଭିତରେ ଯେ ଦଣ୍ଡବତ ପ୍ରଭୁ ଅଛି ॥
ତେଣୁ କରି ମୁଁ ଯେ ଅପ୍ରତେ ପାଇଲି ଛେଡିବା ମନ ସନ୍ଦେହ ।
କେଉଁ ମାନଙ୍କୁ ଦଣ୍ଡବତ ଆସଇ ଏ କଥା ତୁ ମୋତେ କହ ॥
ମୋର ଏହି ବାଣୀ ଶ୍ରବଣରେ ଶୁଣି ଆଶ୍ଚର୍ଯ୍ୟ ହୋଇଲେ ହରି ।
କେଉଁ ଭାବରେ କାହାକୁ ଦଣ୍ଡବତ କେବଣ ପ୍ରକାରେ କରି ॥

ଏହି କଥା ମୋର ହୃଦୟ ପଦ୍ମରେ ରହିବ ଯେ ସଦାକ୍ଷଣ ।
ଆହ୍ନେ ଶ୍ରୀମୁଖରୁ ଯଶସ୍ୱ ଶୁଣିବି ପ୍ରଭେତ ଉପୁଜିବ ମନ ॥
ଶ୍ରୀକୃଷ୍ଣ ବୋଇଲେ ଶୁଣ ଧନପତି ତୁମ୍ଭେ ପୁଚ୍ଛା କଲ ଯାହା ।
ଯେଉଁ ମାନଙ୍କୁ ଦଣ୍ଡବତ କରିବ ମୋ ଆଗେ କହିବା ତାହା ॥
ରଣରେ ଶତ୍ରୁ ପଥରେ ନ ଘୁଞ୍ଚିଣ ସଂଗ୍ରାମ କରିବ ଯାଇ ।
ମରଣ ଦେଖିଲେ ଯେମନ୍ତ ପ୍ରକାରେ ବ୍ରହ୍ମଅଗ୍ନି ପଡ଼େ ଡେଇଁ ।
ଶାନ୍ତ୍ର ପକ୍ଷ ବାଣ ହୃଦୟକେ ଟାଣ ଭେଦେ ବାଜ ଫୁଟେ ଯେବେ ।
ଗର୍ବ୍ବ ଯେଉଁ କ୍ଷତ୍ରୀ ନପଳ ନ ହୋଇ ପଛକୁ ନ ଘୁଞ୍ଚେ ଲବେ ॥
ଶ୍ରାବଣର ପାଣି ଶାହାସ୍ତ ଯେ ଜାଣି ବରଷିବ ଅତି ଗାଢ଼ ।
ତହିଁ ଯେଉଁ କ୍ଷତ୍ରୀ ପଛକୁ ନ ଘୁଞ୍ଚି କରୁଥିବ ପ୍ରାଣ ଗାଢ଼ ॥
ଆହ୍ନଙ୍କୁ ଆସନ କରି ଯେ ଅସନ୍ଧି ଯୁଦ୍ଧେ ଦେଖାଇବ ସତ ।
ଏମନ୍ତ ଭାବେ ଯେଉଁ କ୍ଷତ୍ରୀ ହୋଇବ ତାଙ୍କୁ ମୋର ଦଣ୍ଡବତ ॥
ଯେଉଁ ସତୀ ନାରୀ ସୁସେବା ଯେ କରି ପ୍ରଭୁ ପାଦେ ମନ ଦେଇ ।
ପରପୁରୁଷରେ ଚିତ୍ତ ନ ବଳାଏ କେବେହେଁ ବିମୁଖ ହୋଇ ॥
ପରର ଭର୍ତ୍ତାଙ୍କୁ ନିଜ ପିତା ସମ ମନ ମଧ୍ୟରେ ଯେ ଜାଣେ ।
ପତିଭକତା ବୋଲି ଯେ ଦଣ୍ଡବତ ଯୋଗାଏ ବାଧ୍ୟ ପ୍ରମାଣେ ॥
ପ୍ରକୃତ କ୍ଷତ୍ରୀୟ ପତିବ୍ରତା ନାରୀ ପୂଜାହି ଖାତକ ଗୁରୁ ।
ଏହିମାନଙ୍କୁ ଦଣ୍ଡବତ ମୋହର ହୃଦୟେ ଥାଉ ବାରୁ ॥
ପ୍ରଭୁ ବଚନେ ଧନପତି ବୋଇଲ ଶୁଣ ତୁମ୍ଭେ ଚକ୍ରଧର ।
ଆବର କେତେ ଲୋକଙ୍କୁ ମହାପ୍ରଭୁ ଦଣ୍ଡବତ ତୁମ୍ଭେ କର ॥
କୁବେର ବଚନେ ଶ୍ରୀହରି ବୋଇଲେ ଯାହା ପୁଚ୍ଛା କଲୁ ମୋତେ ।
ଆଉ ଯାହାକୁ ଦଣ୍ଡବତ କରଇ ସେ କଥା କହିବା ତୋତେ ॥
ପୃଥିବୀ ପ୍ରଭୁଙ୍କ ବିସ୍ତାର ଭାବ ଯେ ଅପ୍ରମେୟ ଅଟଇଛି ॥
କେଉଁଠାରେ ହୀରା ମାଣିକ୍ୟ ଥୋଇଛୁ କେଉଁଠାରେ ଅଛୁ ନିଧି ।
ଶୁଦ୍ଧ ସୁବର୍ଣ୍ଣ ଯେ ପାଣିଦ୍ରବ୍ୟମାନ ସ୍ଥାବର ଜଙ୍ଗମମୂଳେ ।
ସର୍ପ ମଣ୍ଡୁକ ନାନା ଜୀବ ସହିତେ ଧାରଣ କରିବ ଠୁଳେ ॥

ଜଳରେ ଯେତେ ଯିନା ନାନା କୁରୁଷି ଯଯାରେ ଉପ୍ତଲ୍ଲୁ ଅଛି ।
ଚେଷ୍ଟେତ ପୀଡ଼ା କଲେ ସମସ୍ତ ଶବ୍ଦଇ ନ ବୋଲେ କାହ୍ନ କ୍ଷୁ କିଛି ॥
ସାତ ଯେ ସାଗର ଦୁର୍ଗମ ଯେ ଘୋର ଆବର ମେରୁ ପର୍ବତ ।
ଏତେ ମହାଞ୍ଚାଙ୍କ ଯେ ସହ୍ଧ ପ ଶ୍ରବ ତାଙ୍କୁ ମୋର ଦଣ୍ଡବତ ॥
ଗଙ୍ଗାର ଜଳ ଯେ ଅତ୍ୟନ୍ତ ନିର୍ମଳ ବୃଷ୍ଟାର ଜହ୍ନବା ଥୋକ ।
ତାହା ଦ୍ରବରେ ବିଗୁର ଆଉ ନାହିଁ ତେଣୁ ଅଟେ ବଡ଼ଲୋକ ॥
ଜିହ୍ବାର ସଙ୍ଗତେ ଆବର ଯେ ଯେତେ ଅଖାଦ୍ୟ ଦ୍ରବ୍ୟହିଁ ଭଲ ।
ଅମୃତ କୁଣ୍ଡ ଯେ ଏ ସୁର ଭାଣ୍ଡ ଯେ ସବୁତ ଏକବ୍ର କଲ ॥
ବ୍ରାହ୍ମଣର ସ୍ପର ଗୃଣ୍ଡାଳର ଘର ସମସ୍ତ ଏକତ୍ର କଲ ।
ମୁଣ୍ଡରେ ବସିଲେ ନାନାଦ୍ଧ ପାତକ ତରେ ଯାନ୍ତି ପାପ ସବୁ ॥
ସ୍ନାହାନ କର୍ମ ଯାବତ ବ୍ରଧି ଧର୍ମ ପବିତ୍ର କରେ ଜଗତ ।
ଏମନ୍ତ ଭବେ ଯେଉଁ ଲୋକ ହୋଇବ ତାକୁ ମୋର ଦଣ୍ଡବତ ॥
ଏହି ଷଡ଼ଲୋକ ଯେ ଅତି ବିବେକ ବଗୃଶ ଗୁଣ ରୁ ରହି ।
ଆବର ଯାହାକୁ ଦଣ୍ଡବତ କରେ ତାହା ଦେବ ତୋତେ କହି ॥
କପିଳାନନ୍ଦନ ଜଗତ ବନ୍ଦନ ଗୁପତେ ଅଟଇ ଜ୍ୟେଷ୍ଠ ।
ସଚରାଚର ଜୀବ ଜନ୍ତୁ ସହିତେ ସବୁରି ଉପରେ ଶ୍ରେଷ୍ଠ ॥
ବ୍ରହ୍ମାଣ୍ଡ ଯେ ଭର ଜଗତେ ଯେ ସାର କାନ୍ଧରେ ଅଛି ସେ ବହି ।
ସ୍ୱର ନରକୁ ଉପକାରୀ ଅଟଇ ନିର୍ମଳ ପବିତ୍ର ଦେହୀ ॥
ହଳରେ ଯୋଚ ଯିନା ତାକୁ କୁରିଚି ଦୁଃଖକୁ ନାହିଁ ତା ଭୟ ।
ମଳ ମୂତ୍ର ଦୁଇ ଦେହେ ବୋଲି ହୋଇ ଅବିକାର ବ୍ରହ୍ମମୟ ॥
ଦେହରେ ମାଡ ବାଜଇ ଅତି ଗାଢ଼ ସହ୍ୟ କରେ ସବୁ ତାହା ।
ନିଶ୍ୱାସ ଛାଡ଼ି ତୁଣ୍ଡ ନ ଫିଟଇ କିଛି ନ ବୋଲଇ ଆହା ॥
ପିଠିରେ ତାହାରି ବହୁତ ଯେ ଭର ପଥର ଲଦିଲେ ବହେ ।
ଶକ୍ୟ ଅନୁକ୍ରମେ ଯେତେକ ପାରିବ ତର୍ଦ୍ଧିକ ନସତ ନୁହେ ॥
ଲଦନ ଗାଢ଼େ ଯେ ପଞ୍ଜରାର ହାଡ଼େ ଉଠଇ ରକତମାଳା ।
ପରପାଇଁ ସେ ଯେ ଢକଥନା ହୋଇ ଦେହରେ ସହଇ ଜ୍ୱାଳା ॥

ଟ୍ଟଲନ୍ତେ ଯେ ବେଗି ପଲଣାଙ୍କୁ ଲାଗି ପିଠିରେ ଗୋଟା ବାନ୍ଧିଲେ ।
କ୍ଷୁରରେ କାଟି ଖଣ୍ଡ ଖଣ୍ଡ କରନ୍ତି ଅଂଶାଇ କୋପ ପଡ଼ିଲେ ॥
ଲବଣ ଯେ ଗୋଳ ଘାଆ ମୁଖେ ବୋଲ ଔଷଧ ପୂରାନ୍ତି ଗାତେ ।
ଲହୁରୁଣୀ ଯେନ ପିଠପାକ ଖାର ଖାର ଦ୍ୟନ୍ତି ଘୃତଆଢ଼େ ॥
ତପତ ଯେ ଲୁହା କହିବ ଯେ କାହା ସୂର୍ଯ୍ୟତେଜ ପ୍ରାପ୍ତ ହୋଇ ।
ନିର୍ଗଣ କର ଦେହରେ ଦାଗ ଦ୍ୟନ୍ତି କେ ପାରିବ ତାହା ସହି ॥
ଜୀବନରେ ନାଶି ଥାଇ ଯେ ଭରସି ନୁହଇ ନିସତ ବୃଥ ।
ଏମନ୍ତ ଭାବେ ଯେଉଁ ଲୋକ ହୋଇବ ତାଙ୍କୁ ମୋର ଦଣ୍ଡବତ ॥
ଏ ହାଦେ ମୋହର ଯୁକତିପେ ସାର ତୋ ଆଗେ କହିଲୁ ସିନା ।
ଅବର ଯାହାଙ୍କୁ ଦଣ୍ଡବତ ହେବା ତାହା କହୁ ଶୁଣ କନା ॥

ଆବର ବୃକ୍ଷକୁ ଲକ୍ଷ୍ୟ ଯେ କ ଦେବା ଜଗତଙ୍କ ଉପକାରୀ ।
କିନାଦୋଷରେ ମୂଳ କାଟି ପକାନ୍ତି ଖଣ୍ଡ ଖଣ୍ଡ କାଟି ଚିର ॥
ବନକୁ ଯେ ଯାଇ ତାକୁ ହଏ ଗ୍ରହ କାହାଙ୍କୁ କି ଦୋଷ କଲା ।
ଧର୍ମକୁ ସେ ଯେ ଉପକାରୀ ହୋଇଣ ପରହିତେ ପ୍ରାଣ ଦେଲା ॥
ରାଜାର ଘର ଯେ ଜଗତୀ ମନ୍ଦିର ସବୁଠାକୁ ତାଙ୍କୁ ଲୋଡ଼ି ।
କିନ ପରଜା ଗୃହବାସ ସହିତେ ଋଷିଙ୍କର ମଠବାଡ଼ି ॥

ସେ ସହି ନାହିଁ ସୁନ୍ଦର ଅବା କାହିଁ ଦଶିବ ବ୍ରହ୍ମାଣ୍ଡ ଗୋଟା ।
ମେଢ଼ ମଣ୍ଡପ ନାବରୂପ ହୋଇଛୁ ସମୁଦ୍ରେ ବନ୍ଧିଛୁ ପଟା ॥
ଦୀପକୁ ଯେ ରୂଖା ସେହି ଅଟେ ଏକା ଫରୁଆ କରାଟ ମୂଳେ ।
ଗୃହ ରୁଅ ଖମ୍ବ ଅନ୍ତ ଯେ ଆରମ୍ଭ ଡେଙ୍ଗ୍ରାକାଠ ହୋଇ ଜଳେ ॥
ମାପକୁ ଅଢ଼ା ସେ ବସିବାକୁ ପୀଢ଼ା ଦୁଆର ଖଟ କବାଟ ।
କୋଡ଼ି କୁରାଢ଼ି ଖଣନ୍ତି ମୂଳେ ସବୁ ଶସ୍ତ୍ରମାନଙ୍କର ବେଣ୍ଟ ॥
ଲଙ୍ଗଳ ମଇ ଶହସ୍ତ ଆଦି ହୋଇ ସଂସାର ଉଆଁଶ ଯେତେ ।
ଏକା ବୃକ୍ଷରୁ ଅନନ୍ତ କାର୍ଯ୍ୟ ହୁଏ ବିସ୍ତାର କହିବା କେତେ ॥

ଚନ୍ଦ୍ର ପିତୁଳା ଭେଳା ଦୋଳା ଆଦି ଯେ ଯାହା କରେ ତା ହୁଅଇ ।
ନାନା ପ୍ରକାରେ ଯେତେ ଦଣ୍ଡ ଦଣ୍ଡିଲେ ତାହିଁକି ନିସତ ନୋହି ॥

ରାବଣରେ ଯୋଗ ପାଗ ସଯୋଗରେ ସବୁଠାରେ ତାଙ୍କୁ ଲୋଡ଼ି ।
ଯେଉଁ ଧନ ତାର ପାଖକୁ ନ ଯିବ ସେ ଧନ ଉପାସେ ପଡ଼ି ।
କାଟିଲେ ଡାଳ ତା ନୁହଇଁ ବିକଳ ବିମୁଖ ନୁହେ ତା ଚିତ୍ତ ।
ଏମନ୍ତ ଭବେ ଯେଉଁ ଲୋକ ହୋଇବ ତାଙ୍କୁ ମୋର ଦଣ୍ଡବତ ॥

ଶୁଣ ହୋ କୁବେର ଏ ସବୁ ପ୍ରକାର କହିଲୁ ତଥ୍ୟ ବଚନ ।
ଆଉ ଯାହାକୁ ଦଣ୍ଡବତ ହୋଇବ ସେ କଥା କର ଶ୍ରବଣ ॥
ଯେଉଁ ପୁରୁଷଟି ହୋଇବ ଉଦାସ ବାହ୍ୟ ବନ୍ଧରୁ ଫିଟି ।
ପରସ୍ତ୍ରୀଙ୍କ ମାତା ପ୍ରାୟ ଦେଖିବ ଟିକେହେ ନ ହୋଇ କପଟୀ ॥
ଖଳଜନ କଥା ମନ୍ଦର ବ୍ୟବସ୍ଥା ଶ୍ରବଣେ ଶୁଣଇ ଯାହା ।
ଏକର କଥା ଆରକୁ ନ କହୁଣ ଗର୍ଭେ ସହାରଇ ତାହା ॥

ନ ଭଣଣ ଲୋଭ ସଂସାରର ଭାଇ ସବୁଠାରୁ ଯେନୁଥାଇ ।
ଆପଣା କୋପ ଅନ୍ତର୍ଗତେ ସହାରି ଚିତ୍ତେ ହରଷ ହୁଅଇ ।
ଦୁଃଖର କଥା ହୃଦୟର ବ୍ୟବସ୍ଥା ଆପଣା ଶରୀରେ ଘେନେ ।
ପର ଆପଣା ଏକ କରି ଦେଖଇ ନ କରଇ ଭିନ୍ନେ ଭିନ୍ନେ ॥
ପିମ୍ପୁଡ଼ିକି ଯେତେ ଗଜକୁ ଯେ ତେତେ ବିଗୁରୁଥାଇ ତା ଚିତ୍ତେ ।
ଦଗ୍ଧିପୋକକୁ ଗଜସମ ନଦେଖଇ ଭକତ ଲକ୍ଷଣ ଚିତ୍ତେ ॥

ରାଜାର ନବର ପରଜାର ଘର ମଣଇ ଏକ ସମାନ ।
ସଂସାରର ଜୀବ ଜବା ହାନିଲଭ ବୁଝୁଥାଇ ସ୍ଥାନ ସ୍ଥାନ ॥
କୂପଜଳ ପୁଣି ସମୁଦ୍ରର ପାଣି ଏକ ଭାବରେ ଦେଖିବ ।
ଚନ୍ଦ୍ର ସୂର୍ଯ୍ୟ ବେନି ଏକ କରି ଘେନି ଆନ ଆନ ନ ପାଞ୍ଚିବ ॥
ଗରଳ ଅମୃତ ତ୍ରାସ ଉପବାସ ଦୁଃଖ ସୁଖ ମଣେ ସମ ।
ନିନ୍ଦିଲା ଲୋକକୁ ଦ୍ୱିଗୁଣେ ବନ୍ଦଇ ମନରେ ନ ବହି ତମ ॥
ଶାସ୍ତ୍ରରେ ଏ ବାଣୀ ନୁହଇଁ ବଖାଣି ବଚନ ସର୍ଘୀରେ କହେ ।
ପ୍ରସଂସା କଲେ ଗର୍ବର ହବେ ଥାଇ ନିନ୍ଦକୁ ତା ବଡ଼ ଭୟେ ॥

ଅଗ୍ନିରେ ପୋଡ଼ିବା ଜଳରେ ବୁଡ଼ିବା ଏ ଦୁଇ ସମାନ ମଣେ ।
ହିମ ଶିଶିର ବରଷା ଆଦିକରି ବସନ୍ତ ଋତୁରେ ଗଣେ ॥

ଇନ୍ଦ୍ରଙ୍କର ଘର ରଙ୍କର ମନ୍ଦର ଆବର ପର୍ବତ ଶିଖ ।
ଝାଙ୍କଳି ଟିକର ଲତା ଚୂଡ଼ା ସମ ନ ମଣଇ ପରମ ସୁଖ ।
କାକର ଖରା ଯେ ଏକ ଖରବ ପରି ପ୍ରତେ ପାଉଥାଇ ମନ ।
କୁବେରର ପୁର ଦରିଦ୍ରର ଘର ନ ମଣଇ ଭିନ୍ନ ଭିନ୍ନ ॥

କୋମଳ ବଚନେ କହେ ଅନୁକ୍ଷଣ ନ କହଇ ଆତ୍ମକଥା ।
ଦେଖି ପର କଲ୍ପ ହୁଅଇ ସେ ଖଳ ପାଉଥାଇ ମନେ ବ୍ୟଥା ॥
ଲୋଚନ ଦୁଇ ଯେ ନାସ୍ତଳରେ ଥାଇ ଥାଇ ତା ଚେତନା ଘରେ ।
ନିର୍ବାତ ପ୍ରଦୀପ ଯେମନ୍ତ ଦିଶଇ ମନ ତା ତେସଇ ପ୍ରକାରେ ॥
ପର ଅପର ଭେଦ ନାହିଁ ତାହାର ସବୁଠାରେ ଥାଇ ଝଳ ।
କଳ୍ପତରୁ ମାଟିରୁ ବାହାରିଲେ ନ ଲାଗେ ଯେସନେ ମଳ ॥

ଠିକକୁ ଦେଖିଲେ ସୁଖ ପାଇଥାଇ ଠାବ ତା ନିର୍ମଳ ସ୍ଥାନ ।
ପଙ୍କେ ପଶିଲେ ପୁଷ୍ପଫଳ ଯେମନ୍ତେ ନ ଛାଡ଼ଇ ଜାତି ବର୍ଣ୍ଣ ॥
ନାନାଦି କୁବୁଦ୍ଧି କରୁଥାଇ ମିଶି ସଂସାରୁ ନୁହେଁ ବାହାର ।
ସ୍ୱଧର୍ମରେ ଥାଇ ଆନ ନ ଦେଖଇ ଧୀରବୁଦ୍ଧି ଅଟେ ତାର ॥

ସ୍ୱର୍ଗମର୍ତ୍ତ୍ୟ ଯେବେ ଏକକାଳ ଦେଖି ଦୃଷ୍ଟିରେ କରଇ ତୁଲ୍ୟ ।
ପାଷାଣ ସୁବର୍ଣ୍ଣ ଦ୍ରବ୍ୟ ସମପ୍ରୀତି ନ ବସ୍ତୁରେ ମନ୍ଦ ଭଲ ।
ଅଟନ୍ତି ନିନ୍ଦା ଅଟନ୍ତି ଜଗାଗର ଆନନ୍ଦେ ନାହିଁ ତା ଦୃଷ୍ଟି ।
ପାଦ ପଦ୍ମକୁ ତା ବହୁତ ଶରଧା ସୁଜନ ସଙ୍ଗତେ ଗୋଷ୍ଠି ॥

କାଚ କାଞ୍ଚନ ସମତୁଲ ଦେଖଇ ସାଆନ୍ତ ସେବକ ଏକ ।
ବିପ୍ର ଚଣ୍ଡାଳ ଯେ ଭିନ୍ନାଭିନ୍ନ ନାହିଁ ସମାନ ତାର ବିବେକ ॥
ଅଗ୍ନିର ଝାସ ଲାଗିଲେ ଶରୀରେ ଶୀତଳ ପ୍ରାପ୍ତେକ ମଣେ ।
ସ୍ଥାବର ଜଙ୍ଗମ ଯେ କୀଟ ପତଙ୍ଗ ସମସ୍ତଙ୍କୁ ସମ ଗଣେ ॥

ବୃଦ୍ଧ ବାଳକ ବିଟନକ ଅବିବେକ ସବୁଙ୍କୁ ସର ଗଣନା ।
ତିଗ ମେଳିଲେ ଜ୍ଞାନପ୍ରାପ୍ତ ମଣଇ ଘେନଇ ପର ବେଦନା ॥
ଲୋକ ଆଗର ଯେ ସବୁରି ବିଚାର ଯେଉଁ ଘଟେ ଯେଉଁ ମାନ୍ୟ ।
ଫେଡ଼ି କାହାକୁ ଦଣ୍ଡବତ ନୁହଇ ଅନ୍ତର୍ଗତେ ଚିହ୍ନ ଜାଣ ॥

ଅମ୍ଳରର ଫଳ ଔଷଧର ମୂଳ ସମତା ଦୃଷ୍ଟିରେ ଦେଖନ୍ତେ ।
ଲଭ ହାନି ବେନି ଏକ କରି ଯେନି ଭାନ୍ତିକି ଦୂରୁ ଉପେକ୍ଷେ ॥
ଜନନୀ କି ପିତା ପୁତ୍ର ସେ ଦୁହିତା ଏଥି ମଲେ ଶୋକ ନାହିଁ ।
ଥିଲ ନ ଥିଲ ଦୁଇ ଏକ କରି ଶ୍ରୀପାଦପଦ୍ମେ ମନ ଦେଇ ॥
ଶଙ୍ଖର ଶବଦ ମହୁରୀର ନାଦ ଟମକ ନିଶାଣ ଯାଏ ।
ଭେରୀ କାହାଳୀ ଟମକ ଅବଧକରି ମଣଇ ସେ ଏକପ୍ରାୟେ ॥
ଆମ୍ବ ସେ ତାଳମ୍ବ କଦଳୀ ସେ ଜମ୍ବୁ ବୃକ୍ଷଫଳ ଯେତେ ଯହିଁ ।
ତାଳ ତନ୍ତୁଳ ବରକୋଳି ସହିତେଂ ଶ୍ରୀଫଳ ପ୍ରାୟ ମଣଇ ॥
କାକୁଡ଼ିର ରସ ମୂଳାର ରସକୁ ଆଖୁରସ ପ୍ରାୟ ମଣି ।
ଜାଈ ଯୁଈ ମଲ୍ଲୀ ସେବତୀ କରୁଣା କମଳ ସଙ୍ଗତେ ଗଣି ॥
ଶୂଦ୍ର ଚଣ୍ଡାଳର ବ୍ରାହ୍ମଣର କୁଳ ଏ ତିନିକି ଏକ ଦେଖି ।
ମର୍କ୍ତାଙ୍କର ସ୍ୱନ କାକର ବଚନ କୋକିଳ ସଙ୍ଗତେ ଲେଖି ।
ଘର ବାହାର ଭେଦ ନାହିଁ ତାହାର ଚିତ୍ତ ତା ଏମନ୍ତ ଦୃଢ଼ ।
ଝୋଟକୁଡ଼ରେ ଆସନ କରିଥିଲେ ମଣଇ ସୁବର୍ଣ୍ଣ ପୀଢ଼ ॥
ପର ହିତକଥା ଯେତେକ ବ୍ୟବସ୍ଥା ଯାହାର କେଉଁ ବିଧାନ ।
ଜଗତ ଧନ ମୋହର ବୋଲି କରି ବିଗୃରୁ ଥାଇ ତା ମନ ॥
ପାପକୁ ତାହାର ଭୟ ସେ ଅପାର ପୁଣ୍ୟକୁ ଆଦର ଥାଇ ।
ପରମାନନ୍ଦଙ୍କୁ ଚିତ୍ତରେ ଧରିଣ ପରଦୁଃଖେ ଦୁଃଖୀ ହୋଇ ॥
ପାଦପଦ୍ମ ବେନି ହୃଦେ ଥାଇ ଯେନି ନିର୍ମଳ ଅଟେ ତା କାୟା ।
ପୋଷିଲ ଜନ୍ତୁକୁ କେବେହିଁ ନ ମାରେ ପୀରତି ଲୋକକୁ ଦୟା ॥
କୁଟିଳ କଥାକୁ ଶୁଣି କରି ବ୍ୟଥା ପାଉଥାଇ ମନେ ମନ ।
ବିଶ୍ୱାସ ଲୋକକୁ ଅନ ନ କହଇ ଭକତ ଦେଖିଲେ ମାନ୍ୟ ॥
ଦେହକୁ ପ୍ରକୃତି କରିଣ ନ୍ୟପତି ନ ଜାଣଇ ଦୁଃଖ ସୁଖ ।
ଫୁରୁଣା ହୋଇ ସେ ନିରନ୍ତରେ ଥାଇ ପ୍ରସନ୍ନ ଦିଶେ ତା ମୁଖ ॥
ପଥରେ ଗମିଲେ ବସିଣ ସେ ଥିଲେ ଏକଭାବେ ତାହା ଜାଣେ ।
ପାଦପଦ୍ମବିନୁ ଯେତେ କଥାମାନ ହିତଯୋଗ ପ୍ରାୟ ମଣେ ॥

ହୃଦେ ଥାଇ ଦୟା ନ ଥାଇ ଯେ ମାୟା ପବିତ୍ର ଚରିତ୍ର ଯାର ।
ଏମନ୍ତ ସ୍ୱଭାବେ ଯେଉଁ ଲୋକ ହୋଇବ ତାଙ୍କୁ ଦଣ୍ଡବତ ମୋର ॥
ଏ ସକଳ ଗିର ଶ୍ରବଣେ କୁବେର ଶ୍ରୀହରି ମୁଖଙ୍କୁ ଶୁଣି ।
କୋଟିଏ କୋଟି ଦଣ୍ଡବତ ହୋଇଲା ପାଦପଦ୍ମ ତଳେ ଯାଇ ॥

ପ୍ରଭୁଙ୍କୁ ଶୁଣି ଧନପତି ବୋଇଲା ଯାହା ଆଜ୍ଞା ଦେଲ ଭଲେ ।
ପ୍ରଭୁପଣରେ କେଉଁ ସୁଖ ରହିଲା ଏମାନଙ୍କୁ ମାନ୍ୟ କଲେ ॥
ଅଶେଷ ବ୍ରହ୍ମାଣ୍ଡଠାକୁର ହୋଇ ଯେ କହିଲ ଏମନ୍ତ ବାଣୀ ।
ମନକୁ ମୋର ମହାଭୟ ଲାଗୁଛି ତୁମ୍ଭ ଶ୍ରୀମୁଖରୁ ଶୁଣି ॥
ଶ୍ରୀକୃଷ୍ଣ ବୋଇଲେ ଶୁଣ ଧନପତି କହିବା ପ୍ରତିବଚନେ ।
ମୁନିମାନଙ୍କୁ ଦଣ୍ଡବତ କରଇ ତାହା ନ ଜାଣୁ କି ମନେ ॥

ସତ ପାଳିଲାକୁ ଯୁଧିଷ୍ଠି ଦେବଙ୍କୁ ଦଣ୍ଡବତ୍ କଲି ମୁହିଁ ।
ଅନନ୍ତ ନାମେ ପଡ଼ିହାରୀ ହୋଇଲି ଆସନ ତଳରେ ଯାଇଁ ।
ଅର୍ଜୁନର ଛଳେ ଶରବନ୍ଧ ତଳେ ହନୁ କଲି ମେ ତେ ଯାହା ॥
ମୁଖପଦ୍ମ ଫୁଟି ରୁଧିର ବହିଲା ସମସ୍ତେ ଜାଣନ୍ତି ତାହା ।
ଆବର ଲକ୍ଷ୍ମଣ ଶୁଣ ପ୍ରତ୍ୟକ୍ଷେଣ ତୋହଆଗେ ଦେବା କହି ॥

ଭକତ ସ୍ୱବକୁ ଶ୍ରୀବତ୍ସଚିହ୍ନ ଯେ ହୃଦପଦ୍ମେ ଅଛି ବହି ।
ପ୍ରହ୍ଲାଦକୁ ଇନ୍ଦ୍ରପଦ ଦେଲି ମୁଁ ଜଗତେ କରନ୍ତି ଧନ୍ୟ ॥
ରୁକ୍ମିଣୀ ବିଭାରେ ବିପ୍ରପାଦ ଧୋଇ ତାହାଙ୍କୁ କଲିଟି ମାନ୍ୟ ।
ମୁହିଁ ଭଗବାନ ଭକତଜୀବନ ମହିମା ଶରଣ ମେରୁ ।
ଶବରୀ ଚୁମ୍ବିଲା ଆମ୍ଭକୁ ଭକ୍ଷିଲ ଏହା କାହିଁ ନ ବିସ୍ମରୁ ॥

ଜାତ ଅଜାତ ମୋ ଭିନ୍ନାଭିନ୍ନ ନାହିଁ ସବୁଘଟରେ ମୁଁ ସରି ।
ବିଶ୍ୱସଂସାର ଖେଳାଗର ନିମନ୍ତେ ଶଙ୍ଖ ଚକ୍ର ଅଛି ଧରି ॥
ସୁର ଯେ ଅସୁର ନାଗ ଯେ କିନ୍ନର ଯେତେକ ସଂସାରମତ ।
ଜୀବ ଅଜୀବ ସଂସାରେ ଯେ ଅଛନ୍ତି ସର୍ବେ ମୋର ଭକତ ॥

ସ୍ଥାବର ଜଙ୍ଗମ ଏ କୀଟ ପତଙ୍ଗ ସବୁଘଟେ ପୂର୍ଣ୍ଣମୟ ।
ଆମ୍ଭଙ୍କୁ ଆମ୍ଭେ ଦଣ୍ଡବତ ହୋଇଲୁଁ ତୁ କାହିଁ କରୁଛ ଭୟ ॥

ଗୋଧନ ବସ୍ତ୍ରାଙ୍କୁ ଦେବା କେଉଁ ଲକ୍ଷ୍ୟ ତୋ ଆଗେ କହିଲୁଁ ଯାହା ।
ଏମାନେ ଯେଉଁ ଦଣ୍ଡ ସହି ପାରନ୍ତ ମୋହିବଳେ ନୁହେ ତାହା ॥
ତୁ ହୋ କୁବେର ମନକୁ ଅସ୍ଥ କର ଶ୍ରୀମୁଖେ କହୁଛୁ ଶୁଣ ।
ସହିଲ ଲୋକ ମହତ ହାଦେ ବଡ଼ ଧୂର ଅଟେ ଏହା ଜାଣ ॥
ଶ୍ରୀକୃଷ୍ଣର ବାଣୀ ଧନପତ୍ତ ଶୁଣି ଅନ୍ତର୍ଗତେ ଏକ କର ।
ମୋହର ଦ୍ରୋହକୁ ଦଣ୍ଡିବା ହେତନ୍ତୁ ଶଙ୍ଖ ଚକ୍ର ଗଦାଧାର ॥
ଶ୍ରୀକୃଷ୍ଣ ବୋଇଲେ ତୋତେ କାହିଁ ପାଇଁ ଦ୍ରୋହଦଣ୍ଡ ଦେବ ମୁହିଁ ॥
ଜ୍ଞାନେ ଅଜ୍ଞାନେ ଯେ ନ ଜାଣି ହୁଅଇ ଏଥିରେ ଅପ୍ରାଧ ନାହିଁ ॥
ଭକତଭାବକୁ ଯୁକତେ ଲମ୍ପଟ ନାମ ମୋ କରୁଣାସିନ୍ଧୁ ।
ଆମ୍ଭଙ୍କୁ ଅନ୍ତେ ଦଣ୍ଡବତ ହୋଇଲୁଁ ତୁ ଜପା ତାହାଙ୍କୁ ନନ୍ଦୁ ॥
ମୋହର ନ ଥିଲ ଠାବ ଆଉ କାହିଁ ବୁଝାଇ କହିବା ତୋତେ ।
ଦଣ୍ଡିପୋକ ହୁଦେ ବଳେ କରଅଛୁ ଶଙ୍ଖ ଚକ୍ର ଯେନ ହସ୍ତେ ॥
ଯେଚଣ ଲୋକର ନାହିଁଟି ବିବେକ ସଂଶୟ ନ ଥିବ ଚିତ୍ତି ।
ସେମାନେ ସିନା ଯାନ ବଡ଼ ମଣନ୍ତି ଶୁଣ ତୁ ହୋ ଧନପତ୍ତ ॥
ବାହାର ଲୋକଙ୍କୁ ଭଣ୍ଡାଇବାପାଇଁ ଧରଇ ଆମ୍ଭର ଭେକ ।
ଭକତ ବୋଲି ସେମାନଙ୍କୁ ନ ବୋଲି ପଶୁସଙ୍ଗେ ତଙ୍କୁ ଲେଖ ॥
ମୁହିଁ ଅଚ୍ଛଦ୍ର ପୁନ୍ୟଜନ ପୁରୁଷ ମୋତେ ଯେବେ ଛିଦ୍ର କଲ ।
ଜ୍ଞାନୀ ସଙ୍ଗତେ ତାକୁ ଲେଖା ନ କର ଅଧମ ଗତିକି ଗଲ ॥
ଷଣ୍ଢୀ ଯତି ହୋଇ ସଂସାର ଭିତରେ ଯେତେକ ଅଛନ୍ତି ପ୍ରାଣୀ ।
ସେ ସତ୍ୟ ପାଳିଲ ମୋ ତହୁଁ ବଡ଼ ସେ ଅନ୍ତର୍ଗତେ ଥିବୁ ଜାଣି ॥
ଯେବଣ ହରି ଅନନ୍ତରୂପ ଧରି ସର୍ବଭୂତରେ ପ୍ରକାଶ ।
ସେ ପ୍ରଭୁ ଚରଣେ ଶରଣ ପଶଇ ଅରକ୍ଷିତ କୃଷ୍ଣଦାସ ॥

—ଓଁ—

ଶ୍ରୀକୃଷ୍ଣଙ୍କ ବାଣୀ କୁବେର ସେ ଶୁଣି ପାଦେ ପ୍ରଣିପାତ କଲ ।
କେତେ କେତେ ଧନ ଯୁଧିଷ୍ଠିରଙ୍କି ଦେବ ଶ୍ରୀମୁଖେ କହ ବୋଇଲ ॥
ଶ୍ରୀକୃଷ୍ଣ ବୋଇଲେ ଶୁଣ ଧନପତ୍ତ ପଛେ ବଗୁରିବ ତାହା ।

ଭକତମାନଙ୍କୁ ଦଣ୍ଡବତ କଥା ଆମ୍ଭଙ୍କୁ ପୁଚ୍ଛିଲୁ ଯାହା ।।
ବାମ ପାଦ ଜାଣି ଅଙ୍ଗୁଷ୍ଠି ନଖରୁ ଗଙ୍ଗାକୁ କରଅଛୁ ଜାତ ।
ସେହି ଜଳ ଆଣି ସ୍ନାନ କଲେ ମୁହିଁ ତେବେ ହୋଇବି ପବିତ୍ର ।।
ତୁ ଯେ ବୋଇଲୁ ଏ ମୁବଣ୍ଡାମାନଙ୍କୁ ଦଣ୍ଡବତ କାହିଁପାଇଁ ।
ତ୍ରିଗୁଣମାନେ ଯେତେ ସଂସାରେ ଅଛନ୍ତି ବୈଷ୍ଣବ ରୂପଟି ସେହି ।
ଗୋ-ମାତାବତ୍ସଙ୍କୁ ଦେବା ଯେଉଁ ଲକ୍ଷ୍ୟ ଅବିକାର ବ୍ରହ୍ମମୟେ ।।
ତାହାଙ୍କ ମୋର ଭବନେ ଲାଗିଲେ ତେବେ ସେ ପବିତ୍ର ହୁଏ ।।
ଆଉର କଥାଏ ଶୁଣ ଶୁଦ୍ଧଚେତା ଉତ୍ତମ ଧ୍ରୁବ ଦୁର୍ଲ୍ଲଭ ।
ପଞ୍ଜୁରା ଭିତରେ ଶୁଆ ଯେସନେ ଥାଇ'ତୋଷଇ ଅତି ସୁଲଭ ।।
ଭକତଙ୍କ ଗୁଣ କହିବା ଯେ ଶୁଣ ସେ ମୋର ଅଟଇ ତାତ ।
ରାମ କୃଷ୍ଣ ହରି ଗୋବିନ୍ଦ ବୋଲନ୍ତେ ଜିହ୍ୱାରୁ ହୋଇଲି ଜାତ ।।
ଅଶେଷ କୋଟି ବ୍ରହ୍ମାଣ୍ଡ ମୋତେ ଯେହ୍ନେ ବସୁଧା ଅଛି ତା ବନ୍ଧ ।।
ଏତେ ଭରା ଯେବେ ସେ ନାହିଁ କରିବ ମୁଁ କାହିଁ ଥାଆନ୍ତି ରହି ।।
ମୋର ମାୟା ମୁହିଁ ଛାଡ଼ି ନ ପାରଇ କହିଲି ଧ୍ରୁବ ବଚନେ ।
ସାଧୁଠାରେ ଯେଉଁ ଖାତକ ଜନ୍ମାନ୍ତି ତେଣୁକରି ତାଙ୍କୁ ମାନେ ।।
ନ ଥିଲା ଖାତକ ଜାଣିବା ଜନମନ୍ତେ ଯେଉଁ ସାଧୁ ଧନ ଦେଲା ।
ଦସ୍ୟୁଙ୍କୁ ପୁରୁଷ ତାହାକୁ ବୋଲିବା ଯେଣୁ ସେ ଦୟା ବହିଲା ।
ମୁହିଁ ସେ ଖାତକ ମୁହିଁ ପିତା ସାଧୁ ମୁହିଁ ସେ କପିଳା ବତ୍ସ ।
ବିଶ୍ୱ ସଂସାରେ ଚେତନଧର ଜନମନ୍ତେ ନାନାରୂପ ହୋଇଅଛୁ ।
ଏକା ଚନ୍ଦ୍ର ଯେସନେ ଜଳମଣି ଉଦେ ଏକାଦଶୀ ଯେଉଁ ଘଟେ ।
ଏକା ବିଷ୍ଣୁ ସର୍ବଭୂତେ ପ୍ରକାଶିଛି ବିସ୍ତର ରୂପେ ତୁ ଏବେ ।।
ବିଷ୍ଣୁଙ୍କୁ ବିଷ୍ଣୁ ଧନ ଦାନ ଦେଉଛି ବିଷ୍ଣୁମୟଟି ଜଗତ ।
ବିଷ୍ଣୁକୁ ବିଷ୍ଣୁ ଯେ ଭକ୍ଷ କରୁଅଛି ଏହା ଯେ ପରମ ତତ୍ତ୍ୱ ।।
ତୁ ଯେବେ ମୋତେ ନମସ୍କାର ହୋଇବୁ ମୁକତ ହୋଇବା ପାଇଁ ।
ମୋହ ଲୋଚନ ଭିତରେ ତୋତେ ମୁହିଁ ବେନ ହସ୍ତ ଯୋଡ଼ି ଥାଇ ।।
ବିଷ୍ଣୁଙ୍କୁ ବିଷ୍ଣୁ ଦଣ୍ଡବତ କରୁଛି ନ ଜାଣେ ପାମର ମୂଢ଼ ।
ସଂସାରଯାକ ସମସ୍ତ ବିଷ୍ଣୁମୟେ ଏଥେଁ ନାହିଁ ସାନ ବଡ଼ ।।

ଏକ ବୃକ୍ଷରୁ ଅନନ୍ତ ଶାଖା ଯେହ୍ନେ ସେହ୍ନମତ ବସ୍ତୁ ଲୀଳା ।
ନାନା ବର୍ଣ୍ଣ ଗାଈ ଠୁଳ କରି ଦେଖ ସବୁରି ଗୋରସ ଧଳା ॥
ଏକା ଅଗ୍ନି ସ୍ୱାଦେ ଜଗତେ ବ୍ୟାପିଛୁ ଏକା ଜଳ ସବୁଠାଇଁ ।
ସହସ୍ର ଘଟରେ ଏକ ସୂର୍ଯ୍ୟ ଉଦେ ତେସନ ସ୍ୱଭାବେଟି ମୁହିଁ ॥
ଏକା ପବନ ସବୁଠାବେ ବହୁଛୁ ଦ୍ୱିତୀୟ ଅଛୁ କି ଭେଟା ।
ଦର୍ପଣ ଭିତରେ ଗୃହିଁଲେ ଯେମନ୍ତେ ଏକ ମୂର୍ତ୍ତି ଦେବନ ଗୋଟା ॥
ଏକା ମେଘ ଯେହ୍ନେ ଅଶେଷ ବ୍ରହ୍ମାଣ୍ଡେ ଜଳବୃଷ୍ଟି ଆଣି କରି ।
ସ୍ୱର୍ଗ ମର୍ତ୍ତ୍ୟ ତିନ ଭୁବନ ଭିତରେ ଏକା ବସ୍ତୁ ଅଛୁ ପୂରି ॥
ତୁ ଯେବେ ମନକୁ ଅପ୍ରତେ ପାଇଲୁ ଆମ୍ଭଙ୍କୁ ଲଗିଲା ଦୁଃଖ ।
ତେଣୁ ତୋହ୍ନ ଆଗେ ବିଗ୍ରହ କହିଲୁ ଏବେ ତୁ ଭ୍ରାନ୍ତି ଉପେକ୍ଷ ॥
ଶୁଣିଣ କୁବେର ଶିରେ ଯୋଡ଼ି କର ଭକ୍ତିଭାବେ ପ୍ରଣମିଲା ।
ବୋଇଲା ଭୋ ପ୍ରଭୁ ନିସ୍ତାର ପାଇଲା ଜନ୍ମର ଦୁରିତ ଗଲା ॥
ଏବେ ଯେ ମୋହର ସଂଶୟ ଫିଟିଲା ତୁଟିଲା ହୃଦର ଭୟ ।
ଅଶେଷ ଜନ୍ମର ପାତକ ମୋହର ଆଜଠାରୁ ଗଲା କ୍ଷୟ ॥
ଏବେ ଗୋସାଇଁ ପ୍ରସନ୍ନମୁଖ ହୋଇ ଶୁଣ ତୁମ୍ଭେ ମହାବାହୁ ।
ଯୁଧିଷ୍ଠି ଦେବଙ୍କୁ କେତେ ଧନ ଦେବି ଶ୍ରୀମୁଖରେ ଆଜ୍ଞା ହେଉ ॥
ଶ୍ରୀକୃଷ୍ଣ ବୋଇଲେ ଶୁଣ ଧନପତି ପତ୍ରରେ ଲେଖି ତୁ ନିଅ ।
ଯେତେ ଧନ ଆମ୍ଭେ ଶ୍ରୀମୁଖେ କହିବା ଯୁଧିଷ୍ଠି ଦେବଙ୍କୁ ଦିଅ ॥
କନକର ଚମ୍ପା ଲକ୍ଷମାତ୍ର ଦେବୁ ଗୃନ୍ଦୁଆ ଲକ୍ଷେକ ଦିବ ।
ଶ୍ୱେତ ଗୃମର ଲକ୍ଷଗୋଟି ସହିତେ ସୁବର୍ଣ୍ଣ ଦର୍ପଣ ଥିବ ॥
ଉତ୍ତମ ଗଜମୁକୁତା ଲକ୍ଷେମାଳ ମାଣିକ୍ୟର ଲକ୍ଷେ ହାର ।
ସୁବର୍ଣ୍ଣର ପଦ୍ମ ଲକ୍ଷେକ ଦେବୁ ଯେ ଯହିଁକୁ ଯେଉଁ ବେଭାର ॥
ଯଜ୍ଞବିଧି କାର୍ଯ୍ୟ ନିମନ୍ତେ ଏମାନ ଭୀମସେନ ମୂଳେ ଦେବୁ ।
କାର୍ଯ୍ୟ ସରିଲେ ଯେ ତୋହର ପଦାର୍ଥ ତୁ ତାହା ବୁଝିଣ ନେବୁ ॥
ଲକ୍ଷେ ରାଜନ ବହିବେ ଯେଉଁ ଧନ କହିଲୁଁ ଯଥା ଯୁକତି ।
ଖୋଲ ଉଦଯାଏ ଭଣ୍ଡାର ମୁକୁଳା କରିବୁ ତୁ ଧନପତି ॥

ଏମନ୍ତେ ତହୁଁ କୁବେରଙ୍କୁ କହିଣ ସନ୍ତୋଷେ କରୁଣାସାଇଁ ।
ଯୁଧିଷ୍ଠିର ଦେବଙ୍କୁ ବୋଇଲେ ଗୋସାଇଁ ଚାଲ ଯିବା ବେଗ ହୋଇ ॥
ଲକ୍ଷେ ନୃପତି ଯେ ଯଜ୍ଞରେ ଅଛନ୍ତି ଅନେକ ଦଣ୍ଡି ସନ୍ନ୍ୟାସ ।
ଗନ୍ଧାଯେ.ଗାଡ଼ ବ୍ରାହ୍ମଣାବଧି ନର ଯାହାଙ୍କୁ ଯେଉଁ ପ୍ରକାର ॥
ଅନ୍ନ ବ୍ୟଞ୍ଜନ ଭୁଞ୍ଜି କରି ରାଜନ ତୃପତି ହୋଇବେ ଯେବେ ।
ତେବେ ସେ ପ୍ରଭୁ ଧର୍ମ ଉଦେ ହୋଇବ ତୁମ୍ଭଙ୍କୁ କହୁଛି ଏବେ ॥
ଜଣଜଣକେ ଦଶ ଦଶ ଯୋଗାଡ଼ ଭିଆଣ କରିଣ ଥିବ ।
ଏକା ଜଣକର ଗର୍ଭ ନ ପୂରିଲେ ସବୁହିଁ ନାଶକୁ ଯିବ ॥
ତେଣୁ କରି ମୁହିଁ ତୁମ୍ଭର ଶ୍ରୀମୁଖେ ବଚନ କହୁଛି ଏବେ ।
ଶ୍ରୀମୁଖେ ଏବେ ବିଚାରି ଆଜ୍ଞା ହେଉ କୋପ ନ କରିବେ କେବେ ॥
ଦ୍ରବ୍ୟ ଭୋଜନ ଭୁଞ୍ଜି କରି ରାଜନ ସନ୍ତୋଷ କରିବେ ଚାହିଁ ।
ତେବେ ସିନା ତୁମ୍ଭେ ପ୍ରଶଂସା ପାଇବ ଶୁଣ ହେ ଧର୍ମଙ୍କ ସୁତ ॥
ଶୁଣିଣ ଯୁଧିଷ୍ଠିର ହୋଇଣ ତୃପତି ଶ୍ରୀକୃଷ୍ଣଙ୍କୁ ଘେନି ସଙ୍ଗେ ।
ଆଗେ ଧର୍ମପୁତ୍ର ପଛରେ ଗୋବିନ୍ଦ ବିଜେ କଲେ ଦିବ୍ୟ ରଙ୍ଗେ ॥
ଯଜ୍ଞଶାଳେ ଯାଇ ପ୍ରବେଶ ହୋଇଲେ ହରଷ ହୋଇଲେ ବେନି ।
ସର୍ବ ରାଜାମାନେ ଷଣ୍ଡ ଦୂରୁ ଦେଖି ଚରଣେ କଲେ ଦର୍ଶନ ॥
ଯୁଧିଷ୍ଠିର ଦେବଙ୍କୁ ଆଗେ ଦଣ୍ଡବତ ପଛେ ଗୋବିନ୍ଦଙ୍କୁ ମାନ୍ୟ ।
ଆମ୍ଭ କଲ୍ୟାଣ ପ୍ରସାଦ ହେଉ ବୋଲି ପାଞ୍ଚିଲେ ଧର୍ମନନ୍ଦନ ॥
ଭୀମଙ୍କୁ ଚାହିଁ ହରଷଚିତ୍ତ ହୋଇ ବୋଇଲେ ହସ୍ତିନାସାଇଁ ।
ଲକ୍ଷଭରଣ ଧାନ ଘେନି ଆସିବୁ କୁବେର ପୁରକୁ ଯାଇ ॥
ଶ୍ୱେତ ଚାମର ଦର୍ପଣ ଆଦି କରି କନକର ଚମ୍ପାମାନ ।
ହୀରା ନୀଳା ଦ୍ରବ୍ୟ ମୁକୁତା ସହିତେ ଆଣିବୁ ନାନାଦି ବର୍ଣ୍ଣ ॥
ଯୁଧିଷ୍ଠିରଙ୍କ ବାଣୀ ଭୀମସେନ ଶୁଣି ଶିରରେ ଯୋଡ଼ିଲେ କର ।
ବୋଇଲେ ମୋତେ ଯେବଣ ଆଜ୍ଞା ଦେଲ ଶୁଣିମା ଧର୍ମକୁମର ॥
ପ୍ରଥମେ ଲାଜ ପାଇଣ ଦେବରାଜ ଜଣାଇଲି ତୁମ୍ଭ ପାଶ ।
ଏବେ ପୁଣି ତୁମ୍ଭ ଆଜ୍ଞାରେ ଯିବ ମୁଁ ନ ଦେଲେ କରିବି ନାଶ ॥

ଯୁଧିଷ୍ଠି ବୋଇଲେ ଏ କଥାରେ ଆଉ ସଂଶୟ ନାହିଁଟି ବାତୁ ।
ଶ୍ରୀ ଜଗନ୍ନାଥଙ୍କ ସଙ୍ଗତେ ଯେନ ମୁଁ ପ୍ରତିଜ୍ଞା କରିଛୁ ସବୁ ।।
ତୁହି ଏବେ ଯାଇ କହିବୁ ଯେ ତହିଁ ଆଜ୍ଞା ଦେଲେ ଧର୍ମସୁତେ ।
ଲକ୍ଷଭରଣ ଧାନ ଋଣ ଦେବୁ ତୁ ହୀରା ମାଣିକ୍ୟ ସହିତେ ।।
ତା ଶୁଣି ମାରୁତ ହୋଇ ହୃଷ୍ଟମନ୍ତ ଚଳିଲେ ପବନ ବେଗେ ।
ଯୁଧିଷ୍ଠିରଦେବଙ୍କ ବଚନ ପ୍ରମାଣେ ମିଳିଲେ କୁବେର ଆଗେ ।।

ବୋଇଲେ ହେ ଭାଇ ବିଳମ୍ବ ନ କରି ଧାନ୍ୟକାରେ ତୁମ୍ଭେ ଉଠ ।
ଧାନ ଅମ୍ବରକୁ ନେବାପାଇଁ ମୋତେ ପେଷିଲେ ପାଣ୍ଡବ ଜ୍ୟେଷ୍ଠ ।।
ପ୍ରଥମ ଦିନରେ ପାଇ ଅପମାନ ଯୁଦ୍ଧରେ ବାହୁଡ଼ି ଗଲି ।
ଶ୍ରୀ ଜଗନ୍ନାଥଙ୍କ ଯୁଧିଷ୍ଠି ଆଜ୍ଞାରେ ଏଣୁ ତୋ ପାଶେ ଆଇଲି ।।
ଶୁଣି କୁବେର ଉଠିଣ ଧାନ୍ୟକାର ଗଉଣି ହସ୍ତରେ ଧରି ।
ଲକ୍ଷେ ଭରଣ ଧାନ ମାପି ଥୋଇଲେ ଶଗଡ଼ରେ ସ୍ଥିର କରି ।।
ହୀରା ନୀଳା ମୋତି ମାଣିକ୍ୟ ସହିତେ ସୁବର୍ଣ୍ଣର ଚମ୍ପାମାନ ।
ଶ୍ୱେତଚର୍ମର ଦର୍ପଣ ଆଦି କରି ଦେଲେ ସେ ଅନେକ ରତ୍ନ ।।

ଦେଖିଣ ମାରୁତ ହୋଇଣ ତୃପତ ବୋଇଲେ ପବନ ସୁତ ।
ଆହେ ଧନପତି କେଉଁ ପଥେ ଯିବା କହନ ଦେଖାଅ ବାଟ ।।
ଶୁଣିଣ କୁବେର ହୋଇଲେ ବାହାର ଚଳିଲେକ ଧାନ୍ୟକାରେ ।
ଦେଖିଲେକ ନଦୀ ଗୋଟାଏ ହୋଇଛି ମହାବିସ୍ତାର କ୍ରମରେ ।।

ଅଳପ ବାରି ହୋଇଣ ସେହି ନଦୀ ପଙ୍କ ପାଣି ଗୋଳାଗୋଳ ।
ଶଗଡ଼ ଚକ୍ର ଠାବେ ଠାବେ ରହିଲା ନ ପାରିଲେ ଆଉ ଚଳି ।।
ଦେଖିଣ କୁବେର ମନରେ ତାହାର ବିଚାର କଲେକ ତହିଁ ।
କେଉଁ ବାଟେ ଆଉ ଶଗଡ଼ ଯିବଟି ନିରୋଧ କରିଛୁ ନଈ ।।

ଏ ଧାନ ଯେବେ ଯୁଧିଷ୍ଠି ନ ପାଇବେ ଘୁଞ୍ଚିବେ ସ୍ୱର୍ଗିବ ପ୍ରୀତି ।
ଶ୍ରୀଜଗନ୍ନାଥଙ୍କ ଶ୍ରୀମୁଖରେ ମୋର ହୋଇବ ଅପକୀର୍ତ୍ତି ।।
ବୋଲିବେ କୁବେର ଏତେ ଗର୍ବ ତାର କିସ ବିସ୍ମରିଲା ଚିତ୍ତେ ।
ଯୁଧିଷ୍ଠି ଦେବଙ୍କୁ ଦ୍ରବ୍ୟ ଦେବା କହି ଉପହାସ କଲେ ମୋତେ ।।

ଏତେ ବିଚାରି କରଣ ଧନପତି ମନରୁ ଫେଡ଼ିଲା ଫାନ୍ଦ ।
ଲକ୍ଷ ଭରଣ ଧାନ ମେଲି ଦେଇଣ ନଦୀରେ ବାନ୍ଧିଲା ବନ୍ଧ ॥
ପୁଣିହିଁ ଧାନ ଯେ ଲକ୍ଷେକ ଭରଣ ଭଣ୍ଡାରୁ ଆଣିଲା ବନ୍ଧ ।
ନଦୀ ଭିତରେ ମହାବନ୍ଧ ପଡ଼ିଲା ପର୍ବତ ଆକାର ହୋଇ ॥
ଏମନ୍ତ ଗତି ଦେଖିକରି ମାରୁତି ମନରେ ବହିଲା ଭ୍ରମ ।
କୁବେରକୁ ବୃହି କୋପେଣ ବୋଇଲା ଅଟୁ ତୁ ଜାତି ଅଧମ ॥
ଦରିଦ୍ର ବେଶ ହୋଇଣ ତୁହି ପରି ଧାନ ଝୁଣ୍ଟୁଥିଲୁ କାଲି ॥
ଦେଖୁ ଦେଖୁ ଏବେ ଏତେ ଦ୍ରବ୍ୟ କର୍ମା ନଦୀରେ ଦେଉଛୁ ମେଲି ॥
ଭୀମ ବଚନେ ଧନପତି ବୋଇଲା ଆଜ୍ଞା ଦେଲ ତୁମ୍ଭେ ଯାହା ।
ମୁଁ ତୁମ୍ଭ ଗ୍ରାମୁରେ ବୁଝାଇ କହିବି ଏକମନେ ଶୁଣ ତାହା ॥
ଶଗଡ଼କ ଧାନ ଅକାରଣେ ଗଲା ପ୍ରୟୋଜନ ଅଛି କିସ ।
ଯେତେ ଧାନ ଏବେ ନଦୀରେ ମେଲିଲି ଅକାରଣେ ଗଲା ନାଶ ॥
ଆବର ଯେବେ ଦଶଲକ୍ଷ ମେଲିବି ହୃଦରେ ନ ଥିବ ବ୍ୟଥା ।
ଯୁଧିଷ୍ଠି ଦେବଙ୍କ କାର୍ଯ୍ୟରେ ଲାଗିବ ଯୁଗେ ଯୁଗେ ଥିବ କଥା ॥
କୁବେରର ବାଣୀ ଏସନକ ଶୁଣି ମନେ ବିସ୍ମରିଲା ଭୀମ ।
ବୋଇଲା ବ୍ରହ୍ମାଣ୍ଡ ଭିତରେ ଏହାକୁ କେହି ନାହିଁ ସରସମ ।
ଏତ ବଡ଼ଲୋକ ବୁଦ୍ଧିରେ ଅଧିକ ସକଳ ଗୁଣେ ବଢତା ।
ଶ୍ରୀ ଜଗନ୍ନାଥଙ୍କ ଶରଣାଗୀ ସେବକ କୋଠ ଭଣ୍ଡାର କରତା ॥
ମୁହିଁ ନ ଜାଣି ଇତର ପ୍ରାୟେ ମଣି ମନେ ମନେ କଲି ସାନ ।
ବେନି ଲୋଚନରେ ଏବେ ତ ଦେଖିଲି ଏହାର ପ୍ରତିଜ୍ଞା ମାନ ॥
ଧନ୍ୟ ଜୀବନ ହୋ କୁବେର ତୋହର ଧନ୍ୟ ତୋର ପିତା ମାତା ।
ଲକ୍ଷେ ରାଜାରେ ରାଜସି ଯାଗଠାରେ ଅଟୁ ତୁହି ଅନ୍ନଦାତା ॥
ସ୍ୱର୍ଗ ମର୍ତ୍ତ୍ୟ ତିନି ଭୁବନେ ମହିମା ବିକାଶିଲୁ ତୋର ଭଲେ ।
ପଞ୍ଚ ପାଣ୍ଡବଙ୍କ ମହିମା ରଖିବ ଶ୍ରୀ ଜଗନ୍ନାଥଙ୍କ ବୋଲେ ॥
ଏବେ ହୋ ବାବୁ ବନ୍ଧନ ହୋଇଯିବୁ ମିଳିବୁ ଆପଣା ବାସ ।
ଆହର ଲକ୍ଷେ ଭରଣ ଧାନ ଦେଲେ ବନ୍ଧନ ହୋଇ ତୁ ଆସ ॥

ମାଲୁଠର ବାଣୀ ଏସନକ ଶୁଣି ଧାଉଁକାରେ ଗଲ ଚଳ ।
ଲକ୍ଷେ ଭରଣ ଧାନ ଘେନ ଅଣିଣ ବୃକୋଦର ଆଗେ ମିଳ ॥
ଏଥୁଅନ୍ତେ ପୁଣ ମନଦେଇ ଶୁଣ ରାଜୁସି ଯାଗର ବିଧି ।
ରଜାମାନଙ୍କୁ ସମାଦର କରନ୍ତି ଯୁଧିଷ୍ଠି ନୃପତନିଧି ॥

ଛପ୍ପାଣୋଇ ସସ୍ର ନୃପତି ତହିଁ ଯେ ଗଣିତା ହୋଇବେ ଭଲ ।
ସୁବର୍ଣ୍ଣର ଗୃହ ସହସ୍ର ପ୍ରତିମା ଗଢ଼ାଇଣ କଲେ ରୁଲ ॥

ବିଶ୍ୱକର୍ମାଙ୍କୁ ରାଇଣ ପାଟବାସ ବୋଲିଲେ ଯାଅ ସତ୍ୱର ।
ସଖି ମଣ୍ଡପଙ୍କୁ ଆଦେଶ ପ୍ରକାରେ ନିର୍ମାଣ କର ସତ୍ୱର ॥

ସୁବର୍ଣ୍ଣର ପାଚ୍ଛ ରୁପାର ପାବଚ୍ଛ ନିର୍ମାଣ କରିବୁ ଠିକେ ।
ହୀରା ନୀଳା ମୁକ୍ତା ମାଣିକ୍ୟ ସହିତେ ଲଗିଥିବ ଗୃହପାଖେ ॥
ଶୁକ୍ତଙ୍କ ମଧରେ ହୀରାମେଦି ପ.ଟ ଉପରେ ଗୃହଆ ଖଞ୍ଜି ।
ଛାଡ଼ ଗୃମର ଦର୍ପଣମାନ ଥିବ ଯଦ୍ଧିଁକ ଯେମନ୍ତ ରଞ୍ଜି ॥

ପ୍ରଭୁଙ୍କ ବଚନ ଶୁଣି ବିଶ୍ୱକର୍ମା ନିର୍ମାଣିଲେ ସମସ୍ତେ ।
ଅମ୍ବରକୁ ଲଗେ ସୁନ୍ଦର ଦିଶିଲା ଚନ୍ଦ୍ରମା ଉଇଁଲା ପ୍ରସ୍ତେ ॥

ଯଜ୍ଞଶାଳ ବେଦୀ ଲକ୍ଷେ ତାଳ ଭେଦ ଉପରେଣ ଗ୍ରମୁଣ୍ଡିଆ ।
ଘୃତପାଣେ ଦ୍ରବ୍ୟ ବାସ ବେଢ଼ ଦଲେ କେତେକ ପାଟଖଣ୍ଡୁଆ ॥
ସୁବର୍ଣ୍ଣର ଗୃହ ସହସ୍ର ପ୍ରତିମା ଗଢ଼ାଇଣ କଲେ ବିଜେ ।
ଦେଖି କରି ମହାସନ୍ତୋଷ ହୋଇଲେ ଦେବାଧିଦେବଙ୍କ ରାଜେ ॥
କାର୍ଯ୍ୟ ଶେଷ କରି ଯାଇ ବିଶ୍ୱକର୍ମା ଗ୍ରମୁରେ ଯୋଡ଼ିଲା ହସ୍ତ ॥
ପଦ୍ମକରେ ତାଙ୍କୁ ଶାଢ଼ୀ ତୋଳି ଦେଲେ ଅଶେଷ ବ୍ରହ୍ମାଣ୍ଡନାଥ ॥
ଲକ୍ଷେ ନୃପତିଙ୍କୁ ଲକ୍ଷେକ ନବର କ୍ଷଣକେ ନିର୍ମାଣ କରି ।
ଅନ୍ତର୍ଦ୍ଧାନ ହୋଇ ଶୂନ୍ୟରେ ରହିଲା ବିଶ୍ୱକର୍ମା ଦଣ୍ଡଧାରୀ ॥
ଯୁଧିଷ୍ଠିର ରାଜ୍ୟ ପ୍ରଫୁଲ୍ଲ ଚିତ୍ତରେ ଯଜ୍ଞଶାଳେ ବିଜେ କଲେ ।
ଲକ୍ଷେ ବ୍ରାହ୍ମଣ ବେଦଧ୍ୱନି କରିଣ ଅନଳରେ ଘୃତ ଦେଲେ ॥
ତିଳ ତଣ୍ଡୁଳ ଗୁଆଘୃତ ସହିତେ ଭୋଗକଲେ ବୈଶ୍ୱାନର ।
ହରି ଶବଦେ ଏକାଖଣ୍ଡ ହୋଇଲା ସ୍ୱର୍ଗ ମର୍ତ୍ତ୍ୟ ତିନପୁର ॥

ବାଦ୍ୟର ଚନ୍ଦନେ ଲୋକଙ୍କ ଗନ୍ଧନେ କମ୍ପିଲା ଦେଖ ଧରଣୀ ।
କରି ସ୍ୱର୍ଗରେ ଦେବତା ପୁଷ୍ପ ବୃଷ୍ଟି କଲେ ଆଣି ॥

ଯଜ୍ଞର ବରଣେ ନୃପତିଙ୍କ ପଣେ ବସିଲେ ଧର୍ମଙ୍କ ସୁତ ।
ଅନନ୍ତ ନାମେ ପଡ଼ିହାରୀ ହୋଇଲେ ଆପଣେ ଶ୍ରୀଜଗନ୍ନାଥ ॥

ସୁବର୍ଣ୍ଣର ନେତ୍ର ଘେନ ପଦ୍ମମୁଖ ଭକତବନ୍ଧୁ ଗୋସାଇଁ ।
ଦକ୍ଷିଣା ବୋଲି ଯୁଧିଷ୍ଠିରଙ୍କି ଡାକିଲେ ଖଣ୍ଡ ଦୂରେ ଉଭା ହୋଇ ॥

ଜୟ ଜୟ ହରି ଶବଦ ଶୁଭିଲା ବ୍ରାହ୍ମଣେ ଆଶିଷ ଦେଲେ ।
ଲକ୍ଷେ ନରନାଥ ହୋଇ ଏକତ୍ରିତ ପାଦେ ପ୍ରଣିପାତ କଲେ ॥
ସ୍ୱର୍ଗର ଗନ୍ଧର୍ବ ଖଟିଛନ୍ତି ସର୍ବ ନୃତ୍ୟ କରୁଛନ୍ତି ଆଗେ ।
ବିବିଧ ଛନ୍ଦରେ ବାଜଣା ବାଜୁଛି ମଙ୍ଗଳଗୁଳ୍ପ ଲଗେ ॥

ଚିତ୍ର ଗୁପତଙ୍କୁ ଶ୍ରୀମୁଖୁ ହକାରି ଆଜ୍ଞା ଦେଲେ ଜଗୁରାୟ ।
ପଣ୍ଡୁ ନୃପତିଙ୍କ ବ୍ରହ୍ମହତ୍ୟା ଦୋଷ ଆଜଠାରୁ ଗଲା କ୍ଷୟ ॥
ଏମନ୍ତ ବୋଲି ଆପଣେ ଉଠିଆସି ବହୁତ ପୁଷ୍ପାର୍ଘ କଲା ।
ଢୋଲାପ୍ରଜା କରି ପଣ୍ଡୁ ନୃପତିଙ୍କି ସ୍ୱର୍ଗ ଉପରକୁ ନେଲା ॥
ଏଥୁ ଅନନ୍ତରେ ରାଜସୂୟ ଯାଗରେ ବ୍ରାହ୍ମଣେ ଢାଳନ୍ତି ଘୃତ ।
ସ୍ୱର୍ଗର ଗନ୍ଧର୍ବ ଅପସରା ମିଳି ଶ୍ରୀମୁଖରେ କରନ୍ତି ନୃତ୍ୟ ॥
...ଠ କଏବାର ପଣ୍ଡିତ ସ୍ତୁତିର ମୁଖରବ ଘୋର ବାଦ୍ୟ ।
ଲକ୍ଷେ ନୃପତି ଏକଠାବେ ଅଛନ୍ତି ବ୍ରହ୍ମାଣ୍ଡ କମ୍ପୁଛି ନାଦେ ॥
ଯୁଧିଷ୍ଠିର ଦେବଙ୍କ ଶ୍ରୀମୁଖରେ ଉଭା ସେ ହୋଇଣ କରୁଣାସାଇଁ ।
ଦ୍ୱାରି ମଦ୍ଧମା ବୋଲି ଡାକୁଅଛନ୍ତି ଆସ୍ଥାନ ତଳରେ ଥାଇ ॥
ଦେବ ଦାନବ ମିଶାମିଶି ହୋଇଣ ସମୁଦ୍ର ଯେମନ୍ତେ ମନ୍ଥି ।
ଏକକୁ ଆରେକ ଦେଖି ଯେ ଲାଗିଲା ହେଉଛନ୍ତି ଯନ୍ତାଯନ୍ତି ॥
ଛନ୍ଦା ଯୋଗାଡ଼ ରନ୍ଧଣା ନିରନ୍ତର ଅମୃତ ଉତ୍ତମ ପାକ ।
ସୁବର୍ଣ୍ଣ ଥାଳି ସୁବର୍ଣ୍ଣ କୁଡ଼କାରେ ପରଷନ୍ତି ଲାଗି ଲୋକ ॥
କୋଟିଏ ବନ୍ଧାଣୀ ଘେନ ବିଶ୍ୱକର୍ମା ନିରନ୍ତରେ ଛନ୍ତି ଖଟି ।
...ଣ ଜଣକେ ଭିନ୍ନ ଭିନ୍ନ ଯୋଗାଡ଼ ଯାହାକୁ ଯେମନ୍ତ ଖଟି ॥

ଲକ୍ଷେ ନୃପତି ମଣୋହି ବଧି ସାରି ସନ୍ତୋଷ କରନ୍ତି ଗାନ ।
ଅବଶେଷ ଖତ କୁଢ଼େ ପଡ଼ିଥାଇ ସକଳ ସୁବର୍ଣ୍ଣ ପାତ୍ର ।।

ଧନକୁ ଦାନ ଭୁଆଣ ଆନ ଆନ କେ ତାହା ପାରିବ ଗଣି ।
ଭଣ୍ଡାର ଘରେ ଅଧିକାରୀ ହୋଇଛି ଦୁର୍ଯ୍ୟୋଧନ ନୃପମଣି ।।
ଲକ୍ଷେ ରାଜାରେ ମଉଡ଼ମଣିପଣ ଦେଇଛନ୍ତି ଆଦିକନ୍ଦ ।
କର ଲାଗିଲେ ପଥର ସୁନା ହୋଏ ନାମ ତ ମାନଗୋବିନ୍ଦ ।।

ଏମନ୍ତ ସମୟେ ରାଜସୂୟ ଯାଗରେ କେତେହେଁ କ ଧନ ଗଲା ।
ଯୁଧିଷ୍ଠିର ଦେବଙ୍କ କାର୍ଯ୍ୟ ବିଧାନରେ ଭଣ୍ଡାର ଧନ ସରିଲା ।।
ଦୁର୍ଯ୍ୟୋଧନ ଗର୍ବ ଗଞ୍ଜିବା ନିମନ୍ତେ ଆପଣେ ଶାରଙ୍ଗଧାରୀ ।
ସହସ୍ର କୋଟି ଭଣ୍ଡାର ଧନଯାକ ମାୟାକରି ନେଲେ ହରି ।।
ବିଷ୍ଣୁ ମାୟାଧର ମହିମା ଅପାର ଗରବଗଞ୍ଜନ ବାନା ।
ଭଣ୍ଡାରଯାକ ସବୁ ତୁଚ୍ଛା ହୋଇଗଲା ତଳେ ନ ଥୋଇଲେ ସୁନା ।।

ଯୁଧିଷ୍ଠିର ଦେବଙ୍କ ଛାମୁରେ ଜଣାଇ ଭଣ୍ଡାରେ ଧନ ତ ନାହିଁ ।
କୋଠ ଭଣ୍ଡାରୁ ଧନ ସବୁ ସରିଲା କି ଆଜ୍ଞା ହେବ ଗୋସାଇଁ ।।
ଲକ୍ଷେ ନୃପତି ଦଣ୍ଡ ସୈନ୍ୟ ସହିତେ କନକ ଯୋଗାଡ଼ମାନ ।
ନିତି କି ନିତି ନବରତନ ହୁଅଇ କେତେହେଁ ଅଣ୍ଟିବ ଧନ ।।

ଜଣ ଜଣକେ ପ୍ରତିବିଧି କରିଣ କେତେ ଭୁଆଇବା କାହିଁ ।
ତେଣୁ କରି ପ୍ରଭୁ ଛାମୁରେ କହିଲି ମୋହର ଅପ୍ରାଧ ନାହିଁ ।।
ଯୁଧିଷ୍ଠିର ଦେବଙ୍କ ଛାମୁରେ ଶ୍ରୀକୃଷ୍ଣ କହିଲେ ଏମନ୍ତ ବାଣୀ ।
କର୍ଣ୍ଣଙ୍କୁ ହକାରି ଏକାନ୍ତେ କହିଲା ଦୁର୍ଯ୍ୟୋଧନ ନୃପମଣି ।।
ଶୁଣ ବୁଦ୍ଧି କର୍ଣ୍ଣ ମୋହର ବଚନ ମିଳିବୁ ଯୁଧିଷ୍ଠିର ଆଗ ।
ଶତେ ରଥ ସୁନା ଦାନ ଦେବୁ ବୋଲି ଧର୍ମନନ୍ଦନଙ୍କୁ ମାଗ ।।

ଦଇବେ ତ ଘରଂ ତୁଚ୍ଛା ଯେ ତାହାର ଭଣ୍ଡାରେ ନାହିଁ ନା କିଛି ।
ଏତେବେଳେ ତାଙ୍କୁ ସୁନା ଶତେ ରଥ ମାଗିବୁ ସୂର୍ଯ୍ୟଙ୍କ ବହି ।।
ଲକ୍ଷେ ନୃପତିଙ୍କି ଯାଗକୁ ଆଣିଣ ବଡ଼ିମା ବହିଛି ସେହି ।
କେମନ୍ତ ପ୍ରକାରେ କାହୁଁ ଭୁଆଇବ ଆମ୍ଭର ପ୍ରତିଜ୍ଞା ରହୁ ।।

ରାଜାମାନଙ୍କର ସମ୍ମୁଖରେ ତାହାର ଉପୁଜିବ ଉପହାସ ।
ଯେମନ୍ତ ହୋଇ ଅପମାନ ପାଇବ ତେମନ୍ତ କର ତୁ ଆସ ॥

ଦୁର୍ଯ୍ୟୋଧନ ବାଣୀ ଏସନକ ଶୁଣି ଧାଡକାରେ ଗଲ୍ କର୍ଣ୍ଣ ।
ଯୁଧିଷ୍ଠି ଦେବଙ୍କୁ ବୋଇଲ୍ ସୁବର୍ଣ୍ଣ ଶତେ ରଥ ଦେବୁ ଦାନ ॥

ଦରିଦ୍ର ହୋଇ ଅଇଲି ଧାଇଁ, ମୁହିଁ ତୁ ଯେ ଅଟୁ ନୃପମଣି ।
ସିଦ୍ଧକାର୍ଯ୍ୟ ଅର୍ଥେ ଯଜ୍ଞ କରୁଅଛୁ ଲକ୍ଷେ ନୃପତିଙ୍କି ଆଣି ॥

ଏତେବେଳେ ମୋତେ ଦାନ ଦେଲେ ହାଦେ ଦେଖିବେ ନୃପତି ଗଣେ ।
ନ ଦେଲେ ଯଜ୍ଞ ତୋ ସଫଳ ନୋହିବ ଧର୍ମଶାସ୍ତ୍ର ପରମାଣେ ॥

ଏତେ ବୋଲି କର୍ଣ୍ଣ ବଳସ୍ତୀ ହୋଇଣ ତଳରେ ପାତିଲା ହସ୍ତ ।
ଦେଖି କରି ମନେ ମହା ଚିନ୍ତା କଲେ ଧର୍ମଦେବଙ୍କର ସୁତ ॥

ଅନ୍ତର୍ଗତେ ପୁଣି ଯୁଧିଷ୍ଠି ଠାକୁରେ ମନେ ଚିନ୍ତାକଲେ ହରି ।
ଏ ଘୋର ସଙ୍କଟୁ ପାରକର ମୋତେ ଶଙ୍ଖଚକ୍ର ଗଦାଧାରୀ ॥
ଆହେ ଦୀନବନ୍ଧୁ ଭକତବତ୍ସଳ ମହିମା ଶରଣେମେରୁ ।
ପଞ୍ଚ ପାଣ୍ଡବଙ୍କୁ ସଖା ହୋଇ ତୁ ଯେ ବେଳେ ବେଳେ ରକ୍ଷା କରୁ ॥
ଶରଦ ଗଞ୍ଜନ ଦାନା ଭଗବାନ କ୍ଷଣେହେଁ ଦିଅ ହେ ଦେଖା ।
କୁନ୍ତୀ ରଣ୍ଡପୁଏ ଅନାଥ ହୋଇବେ ତୁ ଯେବେ ନୋହିବୁ ସଖା ॥
ଯୁଧିଷ୍ଠିଙ୍କ ବାଣୀ ଶ୍ରୀକୃଷ୍ଣ ଯେ ଶୁଣି ଶିରରେ ଯୋଡ଼ିଲେ ହସ୍ତ ।
ବୋଇଲେ ଏ ଗୁରୁ କଥାକୁ କିମ୍ପାଇଁ ଚିନ୍ତା କର ଧର୍ମସୁତ ॥
କର୍ଣ୍ଣ ଯେ ଧନ ମାଗିଲା ଦିଅ ଦାନ ତାହାଙ୍କ ପ୍ରସନ୍ନ ହୁଅ ।
ଶତେ ରଥ କ ସହସ୍ରେ ରଥ ଦେବ ତୁମ୍ଭେ ଏକା ଭଲେ ଥାଅ ॥
ଏତେ ବୋଲି ପ୍ରଭୁ ଯୁଧିଷ୍ଠି ଦେବଙ୍କ ପାଦେ ପ୍ରଣିପାତ ହୋଇ ।
ହନୁମନ୍ତଙ୍କୁ ମନରେ ଚିନ୍ତାକଲେ ଭକତବତ୍ସଳ ଗୋସାଇଁ ॥
ତତକାଳେ ଆସି ପବନନନ୍ଦନ ପ୍ରବେଶ ହୋଇଲା କତି ।
ଶ୍ରୀକୃଷ୍ଣ ବୋଇଲେ ବଳମ୍ବ ନ କର ବହନ ଚାଲ ମାରୁତି ॥
ଆମ୍ଭେ ତୋତେ ଚିନ୍ତା କଲୁଁ ଅନ୍ତର୍ଗତେ ମନେ ନ ପାଇବୁ ଦକା ।
ପର୍ବତମାନ ମୁଣ୍ଡରେ ବହିଆଣି ଭଣ୍ଡାର ଘରେ ତୁ ପକା ॥

ଯୁଧିଷ୍ଠି ଦେବଙ୍କୁ ଦାନ ନମନ୍ତ୍ରେଣ କହାଳ କରିଛୁ କର୍ଣ୍ଣ ।
ଶତେ ରଥ ସୁନା ଦେବାପାଇଁ ତାକୁ ବୋଇଲେ ଧର୍ମନନ୍ଦନ ॥

ଏବେ ତୁ ପୁଣି ପର୍ବତ ବହିଆଣି ଭଣ୍ଡାର ଘରେ ଥୋଇ ଦେବୁ ।
ଦୁର୍ଯ୍ୟୋଧନ ଜର ଲାଗିନ୍ତି ମାତ୍ରକେ ସୁବର୍ଣ୍ଣ ହୋଇବ ସବୁ ॥

ଶୁଣିଣ ହରଷ ପବନର ଶିଷ୍ୟ ଶ୍ରୀକୃଷ୍ଣ ଚରଣେ ନୋଇଁ ।
ବୋଇଲା ଏଭଳି ନିମିଷକେ ଆଣିବି ଗିରିବର କେତେ ଗୋଟି ॥

ଶ୍ରୀକୃଷ୍ଣ ବୋଇଲେ ଅଧିକ କଥାରେ ପ୍ରୟୋଜନ ନାହିଁ ବାବୁ ।
ଆମ୍ଭ କାର୍ଯ୍ୟରେ ଯେତେକ ଧନ ଲାଗିବ ତେତେକ ବହିଣ ଦେବୁ ॥

ପ୍ରଭୁଙ୍କର ବାଣୀ କପିବୀର ଶୁଣି ଉଡ଼ିଲା ଗଗନ ମାର୍ଗେ ।
ବାମକରେ ସେହୁ ପର୍ବତ ଗୋଟିଏ ଘେନିଣ ଆଇଲା ବେଗେ ॥

ସେ ଗିରିବର ଯୋଜନ ଦଶବାର ଉସ୍ପର୍ଗ ଛନ୍ନ ଯୋଜନ ।
ସ୍ୱର୍ଗ ପଥରେ ତାହା ଘେନି ଆଇଲା ପବନସୁତ ହନୁମନ ॥
ଯଜ୍ଞଶାଳକୁ ଖଣ୍ଡିଏ ଦୂର ଥାଇ ରହିଲା ଅଞ୍ଜନାସୂନୁ ।
ହୃଦପଦ୍ମେ ତହୁଁ ବିଚାର କରୁଛି ଶ୍ରୀରାମ ସେବକ ହନୁ ॥
ମନେ ମନେ ଗୁଣି କପିକୁଳମଣି ତକ୍ଷଣ ପାଇଲା ବ୍ୟଥା ।
ଯଜ୍ଞ ନିକଟକୁ ପର୍ବତ ନେଲେ ସେ ଜଣା ହୋଇବ ଏ କଥା ॥
ତେଣୁ କରି ମୁଁ ଯେ ଗୁପତ ପ୍ରକାରେ ଏଠାରେ ଦଣ୍ଡେ ରହିବି ।
ପର୍ବତ ଭାଙ୍ଗି ଖଣ୍ଡ ଖଣ୍ଡ କରିଣ ଭଣ୍ଡାରେ ନେଇ ଥୋଇବି ॥
ଏତେ ବୋଲି ବୀର ଶ୍ରୀଜଗନ୍ନାଥଙ୍କୁ ଅନ୍ତର୍ଗତେ ଲୟ କଲା ।
ଯଜ୍ଞଶାଳକୁ ଖଣ୍ଡିଏ ଦୂର ଛଡ଼ା ସାତଶ କୋଶେ ରହିଲା ॥
ହନୁମନ୍ତ ଯେ ଗୁପତରେ ରହିଲା ଜାଣିଲେ କରୁଣାସିନ୍ଧୁ ।
ତତକ୍ଷଣେ ପ୍ରଭୁ ବିଶ୍ୱମାୟା କଲେ ଭକତଜନଙ୍କ ବନ୍ଧୁ ॥
ଶୂନ୍ୟମାର୍ଗେ ଉଡ଼ି ହନୁମନ୍ତ ବୀର ଶୀଘ୍ରେଣ ତହୁଁ ଆଇଲା ।
ପର୍ବତ ଘେନି ଆଇଲି ବୋଲି କରି ପ୍ରଭୁଙ୍କ ଆଗେ କହିଲା ॥
ଶ୍ରୀକୃଷ୍ଣ ବୋଇଲେ କେତେଦୂରେ ଅଛି ଶୁଣ ତୁ ପବନବଂଶି ।
ହନୁ ବୋଇଲା ଏ ଠାବକୁ ନିକଟ ସାତଶ କୋଶେ ରହିଛି ॥

ଭୋଜନ ଅଇଲେ ଯେ ସମସ୍ତେ ଜାଣିବେ ବିସ୍ତାର ହୋଇବ କଥା ।
ଚିତଶୂ କଣ ମୁଁ ଯେ ଖଣ୍ଡ ଦୂରେ ଥୋଇ ଗ୍ରାମୂରେ କହିଲ ଯଥା ।।

ଶ୍ରୀକୃଷ୍ଣ ବୋଧିଲେ ଏଠାକୁ ହୋଇଲା ସାତଶ କୋଶ ଯେ ବାଟ ।
ଆଣିଣ ଯିବାକୁ ବିଳମ୍ବ ବହୁତ ଲାଗିବ ପବନ ଗତ ।।

ହନୁ ବୋଇଲା ଯେ ଏ କଥାକୁ ତୁମ୍ଭେ ଚିନ୍ତା ନ କର ଗୋସାଇଁ ।
ଏକା ନିମିଷକେ ଲକ୍ଷ କୋଶ ଯିବ ଏ ଗ୍ରାର କେତେକ ଭୂଇଁ ।।

ପ୍ରଭୁ ବୋଇଲେ ତୁ ବିଳମ୍ବ ନ କର ଭଣ୍ଡାରେ ଆଣି ପକାଅ ।
ପର୍ବତଯାକ ଭାଙ୍ଗି କରି ନେଇଣ ଭଣ୍ଡାରେ ନେଇଣ ଥୁଅ ।।

ଶ୍ରୀକୃଷ୍ଣ ବଚନ ଶୁଣି ହନୁମାନ ସେଠାରୁ ଗଲା ତ୍ୱରିତେ ।
କୋପଭରେ ନେଇ ପର୍ବତ ଉପରେ ପ୍ରହାର କଲାକ ନାତେ ।।

ହନୁମନ୍ତ ପାଦ ଘାତରେ କମ୍ପିଲା ବାହୁଡ଼ିଲା ଅତିବେଗେ ।
ଭଣ୍ଡାର ପିଢା କଣା କରିଣ ହନୁ ଚାଳିଦେଲା ଶୂନ୍ୟମାର୍ଗେ ।।

ସହସ୍ର କୋଠା ଯେ ଭଣ୍ଡାର ଗୋଟିକି ଉପରକୁ ତାଳେ ଉଚ ।
ବିଶ୍ୱକର୍ମା ଲାଗି ନିର୍ମାଣ କରିଛୁ ପଟାନ୍ତର ନାହିଁ ମଞ୍ଚ ।।

ଦୀର୍ଘ ପ୍ରସ୍ଥ ତାର ବହୁତ ବିସ୍ତାର ଭିନ୍ନ ଭିନ୍ନ ଦ୍ରବ୍ୟ ଧାମ ।
ସ୍ୱର୍ଗ ମର୍ତ୍ତ୍ୟ ତିନିଭୁବନ ଭିତରେ ତାହିଁ କ କ ଦେବା ସମ ।।

ଯେତେ ଦ୍ରବ୍ୟ ସବୁ ରାଜସୂୟ ଯଜ୍ଞରେ କାର୍ଯ୍ୟ ବେଳରେ ସରିଲା ।
ହନୁମନ୍ତର ପ୍ରସାଦରେ ଭଣ୍ଡାର ଏକାକ୍ଷଣକେ ପୂରିଲା ।।

ଦୁର୍ଯ୍ୟୋଧନକୁ ଅନାଇ ପଦ୍ମମୁଖ ଆଜ୍ଞା ଦେଲେ ବେଗେ ଯାଅ ।
ଯୁଧିଷ୍ଠି ରାଜା କର୍ଣ୍ଣକୁ ଦାନ ଦେବେ ସୁବର୍ଣ୍ଣ ବେଗେ ତୁ ଦିଅ ।।

ପ୍ରଭୁଙ୍କର ବାଣୀ ଦୁର୍ଯ୍ୟୋଧନ ଶୁଣି ବୋଇଲା ଅଧର ଚପି ।
ଧନ ମାଗିଲେ ମୁଁ କାହୁଁ ଦେବ ଆଉ ଭଣ୍ଡାରେ ନାହିଁ ତ କିଛି ।।

ପୁଣି ତହୁଁ ଯାଇ କୁରୁ ନରସାଇଁ ପଶିଲା ଭଣ୍ଡାର ଘର ।
ଦେଖିଲା ସହସ୍ର କୋଠାଯାକ ହାଦେ ପଡ଼ିଛୁ ଚକା ପଥର ।।

କ କ ଅଛୁ ବୋଲି ଦରାଣ୍ଡି ହୋଇ ଯେ ହସ୍ତରେ ଯାଇଁ ଟେକିଲା ।
ଦେଖିକରି ତାର ଲାଗିଲା ମାତ୍ରକେ ସୁବର୍ଣ୍ଣ ସବୁ ହୋଇଲା ।।

ବସ୍ତ୍ରାର ଚକା ପଥରମାନ ସବୁ ହସ୍ତେ ଧରି ଦୁର୍ଯ୍ୟୋଧନ ।
ଭଣ୍ଡାର ଘରୁ ବାହାର କରୁ ଦେଲେ ଗାନ୍ଧାରୀଦେବୀ ନନ୍ଦନ
ସଙ୍ଗି ଲଗାଇ ସୁବର୍ଣ୍ଣମାନ ସବୁ ନେଇଗଲେ ଦେବ ଦ୍ୱାର ।
ଯୁଧିଷ୍ଠି ଦେବଙ୍କ ଆଗେ କୁଢ଼ାଇଲେ ପର୍ବତ ଆକାର କରି ॥
ଦେଖି ଧର୍ମପୁତ୍ର ହୋଇଲେ ଉଦାସ ଚିନ୍ତାକଲେ କୃଷ୍ଣ ନାମ ।
ତୁମ୍ଭେ ନ ରଖିଲେ କାହା ବଳେ ପ୍ରଭୁ କରି ହୁଏ ଏଡ଼େ କର୍ମ ॥
କର୍ଣ୍ଣ ମୁଖ ଗୃହେଁ ଧର୍ମ ନରଖାଇ, ଆଜ୍ଞା ଦେଲେ ବେଗେ କହୁ ।
କେତେ ଧନ ତୋତେ ହାଦେ ତୋଳି ଦେବ ଯେତେ ପାରି ତେତେ ନିଅ ॥
ଦରିଦ୍ର ଭାବେ ଅଇଲୁ ତୁହି ଯେବେ ଶ୍ରୀକୃଷ୍ଣ ଫେଡ଼ିଲେ କଷ୍ଟ ।
ଦୁର୍ଯ୍ୟୋଧନ ଯେବେ ପୋଷି ନ ପାରିଲା ଗୋବିନ୍ଦ ଚରଣେ ଖଟ ॥
ଆମ୍ଭେ ପଞ୍ଚଭାଇ ଦୁଃଖ ସୁଖପାଇଁ ଆଶ୍ରେ କରିଅଛୁଁ ମେରୁ ।
ଶ୍ରୀଜଗନ୍ନାଥ ମୋ ଏକା ଭଲେଂ ଆଉ ଆନକୁ ଚିନ୍ତା ନ କରୁ ॥
ଏବେ ତୁ ଯାଇ ବହନ ହୋଇ ଏଥୁଁ କହୁ ଦୁର୍ଯ୍ୟୋଧନ ରାଣ ।
ପର୍ବତ ଆକାରେ ଧନ ପଡ଼ିଅଛୁ ଯେତେ ପାରି ତେତେ ଆଣ ॥
ଶୁଣି ଦୁର୍ଯ୍ୟୋଧନ ହୋଇ କ୍ଷୁନ୍ନମନ ବୋଇଲେ ହେ ବୀର କର୍ଣ୍ଣ ।
ଏ ସ୍ଥାନରେ ଆଉ ଥିଲେହେଁ ନ ରହି ବସାକୁ କର ଗମନ ॥
ନଗରପଣ୍ଡମାନେ ଦେଖିଲେ ହସ୍ତନେ କ ବୋଲି ବୋଲିବେ ଆଜ ।
ଯେଉଁ ବୁଦ୍ଧି କଲି କିଛୁ ତ ନୋହିଲା ବୃଥାରେ ପାଇଲି ଲାଜ ॥
ଏହି କଥା ଦୁର୍ଯ୍ୟୋଧନ ବଚ୍ଛରଣ ସ୍ତମ୍ଭୀଭୂତ ହୋଇ ରହି ।
ଶ୍ରୀ ଜଗନ୍ନାଥଙ୍କ ଚରଣେ ଶରଣ ଦୀନକୃଷ୍ଣ ଦାସ କହି ॥

---

ଏଥୁ ଅନନ୍ତରେ ରାଜସୂୟ ଯଜ୍ଞରେ ଯେତେ ରାଜା ଆସିଥିଲେ ।
ଜଣ ଜଣକେ ଅକ୍ଷତ ବାଧିମାନ ଯୁଧିଷ୍ଠିଠାକୁରେ ଦେଲେ ॥
ଜଗନ୍ନାଥ ମହାପ୍ରଭୁଙ୍କ ଚିତ୍ତରେ ଅନୁଗ୍ରହ ଅଛି ଯାକୁ ।
ସ୍ୱର୍ଗ ମର୍ତ୍ତ୍ୟ ତିନି ଭୁବନ ଭିତରେ ଅପୂଜ କେବଣ ତାକୁ ॥
ଦେବମାନବ ମିଶାମିଶି ହୋଇଣ ପୂଜିଅଛି ନିରନ୍ତର ।
ସମୁଦ୍ର ପ୍ରତ୍ୟେକ ଶବଦ ହାଦେଷ୍ଟି ଶୁଭୁଅଛି ମହାଘୋର ॥

ଅନନ୍ତରେ ଆସି ଯଜ୍ଞଶାଳେ ବସି କଲ୍ୟାଣ କରନ୍ତି ମୁନି ।
ଭାଟ କଏବାର ପଣ୍ଡିତ ଶ୍ଳୋକାର ବ୍ରାହ୍ମଣଙ୍କ ବେଦଧ୍ୱନି ॥
ଶଙ୍ଖ କାହାଳୀ ନିଶାଣ ଆଦିକରି ବାଜୁଅଛି ଘାରତୁର ।
ଯାଦ ଘାତରେ ନବଖଣ୍ଡ ମେଦିନୀ କମ୍ପୁଅଛି ଟଳମଳ ॥
ହନୁମନ୍ତକୁ ଶ୍ରୀମୁଖରେ ହକାରିଣ ଆଜ୍ଞାଦେଲେ ପଦ୍ମମୁଖ ।
ଆମ୍ଭ କାର୍ଯ୍ୟ ଅର୍ଥେ ପବନନନ୍ଦନ ପାଇଲୁ ଅନେକ ଦୁଃଖ ॥

ବହୁତ ଦୂର ଗମିଣ କପିବୀର ଆଣିଲୁ ପର୍ବତ ଘାଣ୍ଟି ।
ସୃଷ୍ଟି ଦେବଙ୍କ ବଡ଼ିମା ରଖିଲୁ ଦୁର୍ଯ୍ୟୋଧନ ଗର୍ବ ଗଞ୍ଜି
ଏବେ ତୁ ବାବୁ ଆମ୍ଭର କାର୍ଯ୍ୟେ ଥିବୁ ଆପଣା ସ୍ଥାନକୁ ଯାଅ ।
କପିବଳ ତୋର ସଙ୍ଗତେ ଘେନିଣ କଦଳୀ ବନରେ ରହ ॥

ଶୁଣି ହନୁମନ୍ତ ପାଦପଦ୍ମେ ଚିତ୍ତ ଦେଇ ପ୍ରଣିପାତ କରି ।
ବୋଇଲା ଗୁପତ କଥାଏ ତୁମ୍ଭଙ୍କୁ ପୁଚ୍ଛିବି ଶାରଙ୍ଗଧାରୀ ॥
ତୁମ୍ଭେ ଶ୍ରୀହରି ହୃଦପଦ୍ମେ ଦୟାକରି ଅନୁଗ୍ରହ କର ମୋତେ ।
କେଉଁ ଭାବନାରେ କେବଣ ପ୍ରକାରେ କେବେ ଭେଟ ପାନ୍ତି ତୋତେ ॥

ପ୍ରଭୁ ବୋଇଲେ ଯେ ଯାହା ବଡ଼ାଇରେ ରହିଛନ୍ତି ସବୁ ପ୍ରାଣୀ ।
କେହି ତ ମୋର ଭାବନା ନ ଜାଣନ୍ତି କେମନ୍ତେ ଭେଟିବେ ପୁଣି ॥
ଥୋକାଏ ଲୋକ ଆମ୍ଭର ଭେକ ନେଇ ଗଳାରେ ପୂରାନ୍ତି ମାଳ ॥
ନାମ ଧରିଣ ପରସ୍ତ୍ରୀ ହରନ୍ତି ବଞ୍ଚି ନ ପାରନ୍ତି କାଳ ॥

ଶୋଳକ ଗୀତ ଯେ ଅଛି ଅପ୍ରମିତ ଶିରଧା ଯୁକତେ ଶିଖି ।
ଭଙ୍ଗିମା କରିଣ ଲୋକ୍ୱ ଏ କହନ୍ତି ଯୁବତୀମାନଙ୍କୁ ଦେଖି ॥
ମନେ ବିଚାରନ୍ତି ଏ ଦିବ୍ୟ ସ୍ତ୍ରୀଙ୍କି କେମନ୍ତେ ହରିବି ମୁହିଁ ।
ଶାଖା ଶବଦରୁ ଲୋକ୍ୱ ଏ ପଢ଼ନ୍ତି ଉଚ୍ଚାଟ କରିବା ପାଇଁ ॥

ଭଙ୍ଗିମା ଯେ କରି ଲୋଚନରେ ଠାରି ତେରଛ ଭାବରେ ଚାହେଁ ।
ମନକୁ ମନ ଯେମନ୍ତ ପ୍ରତେ ପାଇଁ ସେହିମତ ଫୁସୁଲ୍ଏ ॥
ଯେବଣ ସ୍ତ୍ରୀଏ ନାଥରେ ଦୋଗୃଣୀ ତାହା କି ପାବନ୍ତି ସୁଖ ।
ମନ ବୃଦ୍ଧିରେ ଏକ କରି ଘେନନ୍ତି ଦେଖୁଥାନ୍ତି ତାର ମୁଖ ॥

ବୃନ୍ଦରେ ବସ୍ତ୍ର ନଧି ପର ଧରି କ୍ରୀଡ଼ା କରୁଥାଇ ନଟ୍ୟେ ।
କୋଟିଏ ନଧି ପ୍ରାପତ ହେଲେ ପ୍ରାୟୁ ମଣୁଥାଇ ତାହା ଶତେ ॥
ଯେଉଁ ବୈଷ୍ଣବ ପରସ୍ତ୍ରୀ ଦେଖିଣ ମଦନେ ହୁଅନ୍ତେ ଭୋଳ ।
ଇହ ପରଲୋକେ ମୁକତ ନ ପାନ୍ତି ସେମାନେ ତାହାଙ୍କ କାଳ ॥
ଯୋନାଏକ ପ୍ରାଣୀ ନଷ୍ଟଘଟ ପୁଣି ରସ କହନ୍ତୁ କେ ମନ୍ତ ।
ଜଗତ୍ମାଳ ଭାବନା କରୁଥାନ୍ତି ବୋଲନ୍ତି ଗୋପାଳପୁତ୍ର ॥

ମୟୂରର ପକ୍ଷୀ ମଥାରେଣ ଖଞ୍ଜି ଗଢ଼ଣ ଛନ୍ଦେଣ କାଛୁ ।
ପରଯୁବତୀଙ୍କ ମୋହିବା ନିମନ୍ତେ ଭଙ୍ଗିମା ପ୍ରକାଶ ନାଚ ॥
ବାହାରେ ହରି ଭିତରେ ପରସ୍ତ୍ରୀ ବସ୍ତ୍ର କରନ୍ତି ମନ ।
ଏମନ୍ତ ଭାବେ କୀର୍ତ୍ତନ କଲେ ହାଦେ ମୋହିବା ଜଗତଜନ ॥

ବେଣୁର ଶବଦ ଶଙ୍ଖର ଯେ ନାଦ ଝଞ୍ଜାଟ କରଣ ଦ୍ୟନ୍ତି ।
ପର ବହ୍ୱାର ସ୍ତ୍ରୀକୂଳ ସହିତେ ଦେଖିବାକୁ ଧାଇଁ ଯାନ୍ତି ॥
ସେହି ମୃତ କାତ କୀର୍ତ୍ତନେ ଯେ ମାତ ହୋଇଥାନ୍ତି ଦିବ୍ୟବେଶ ।
ଲୋଚନ ଦୁଇ ବନ୍ଧକରି ପକାନ୍ତି ଲଗାଇ ମୋହନ ପାଶ ॥

ସରଳେହେଁ ନାଟ ପଛଲେହେଁ ଭେଟ ତାହା ସୁଖେ ଗୁଣି ହୋଇ ।
ଯାହାର ମନ ଯାହାକୁ ଝଟିଥାଇ ତାହା ଠାବକୁ ସେ ଯାଇ ॥
ଶୁଣ ହେ ମ ରୁତ ଏସନକ ଗତ ବୈଷ୍ଣବ ବୋଲନ୍ତି ଯେହୁ ।
କାମ କ୍ରୋଧ ବହୁ ନରକେ ପଡ଼ନ୍ତି ମୋତେ ନ ଜାଣନ୍ତି ସେହୁ ॥

ଗୁପ୍ତବ୍ରହ୍ମାଳ ଯେ ବାନ୍ଧଣ କପାଳ ପ୍ରତିଜ୍ଞା କରନ୍ତି ଦର୍ପେ ।
ବୋଲନ୍ତି ଆମ୍ଭେ ଯେ ପୂର୍ବେ ଜନ୍ମିଥିଲୁଁ ଶ୍ରୀକୃଷ୍ଣ ସଙ୍ଗତେ ଗୋପେ ॥
ଏବେହେଁ ଗତ ବାସନା ଯେନ ଆମ୍ଭେ ମର୍ତ୍ତ୍ୟେ ଜନମିଲୁ ଆସି ।
ଜଗତମାଳରେ ଦୟା କଲୁଁ ଆମ୍ଭେ କରୁଣାଜଳଧିରାଶି ॥

ତେଣୁ କରି ଆମ୍ଭେ ସଂସାର ଭିତରେ ନୁକତେ ଅଛୁଁ ଯେ ବଡ଼ ।
ଏମନ୍ତ ବୋଲି ପ୍ରତିଜ୍ଞାମାନ ହାଦେ କରନ୍ତି ପାମର ମୂଢ଼ ॥
ମୁଁ କାର ପଦ ମୁଁ ଦଣ୍ଡେ ନ ସହଇ ଶୁଣ ତୁ ପବନବଂଶି ।
ତେଣୁ କରି ହାଦେ ତାହାଙ୍କ ସଙ୍ଗତେ ମୋହର କି ବଶେ ଅଛୁ ॥

ପରସ୍ତିରୀ ହର ନାନା ପାପ କରି ନିନ୍ଦା କରନ୍ତି ମୋ ନାମ ।
ସେ ପ୍ରାଣିମାନଙ୍କୁ ଦଣ୍ଡିବା ନିମନ୍ତେ ବସିଅଛୁ ହାଦେ ଯମ ॥
ପାପିମାନଙ୍କୁ କୁମ୍ଭୀପାକ ଦେଇଛୁ ପୁଣ୍ୟକୁ ସର୍ବ ସମ୍ପଦ ।
ମୁନିମାନଙ୍କୁ ଭକ୍ତିପଦ ଦେଇଛୁ ବ୍ରହ୍ମାଙ୍କୁ ଦେଇଛୁ ବେଦ ॥
ଅଷ୍ଟାଦଶ ଜାତି ଷାଠିଏ ଭିତରେ ଯାହାକୁ ସମ୍ପଦ ଯେହୁ ।
ଯେ ଯାହା କଥାରେ ସମସ୍ତେ ଅଛନ୍ତି ମୋ ଭାବ ଜାଣିବ କେହୁ ॥

ଶୂଦ୍ର ବ୍ରାହ୍ମଣ ଯେ ଏହି ବେନି ଜଣ ସକଳ ଜନ୍ମରେ ଶ୍ରେଷ୍ଠ ।
ଏମାନେ କେହି ମୋ ଭାବ ନ ଜାଣନ୍ତି ଶୁଣ ତୁ ପବନ ସୃଷ୍ଟ ॥
ଯେତେକ ବ୍ରାହ୍ମଣ କରୁଥାନ୍ତି ଜ୍ଞାନ ପାଠରେ ହୋଇ ଶକତା ।
ବେଦ ଶାସ୍ତ୍ର ଲୁଗୃଏ ପଢ଼ି କରି ବୋଲନ୍ତି ଆମ୍ଭେ ବକତା ॥

ଆପଣାକୁ ବଡ଼ ମନରେ କରିଣ ଗାଢ଼ ପ୍ରତିଜ୍ଞା କରନ୍ତି ।
ମୋହର ଭାବକୁ ଠାବ ନ କରିଣ ଦଣ୍ଡ ହୋଇ ମରୁଥାନ୍ତି ॥
ଜ୍ଞାନରେ ଭେଦ ଯେ ନ ଜାଣିଣ ବାଦ ଆରମ୍ଭ କରନ୍ତି ଦ୍ୱନ୍ଦ୍ୱ ।
ଚଟୁ ଯେସନକ ଛଉଣ ସୁଆଦ ନ ଜାଣଇ ଭଲ ମନ୍ଦ ॥

ଶାସ୍ତ୍ର ପାଠ କରି ଭ୍ରମ ହେଉଥାନ୍ତି ଭ୍ରମ ଉପୁଜଇ ଯହୁଁ ।
ମୋର ମହିମା ଦେବଙ୍କୁ ଅଗୋଚର ସେ ଅବା ଜାଣିବେ କାହୁଁ ॥
ନାନା ରଙ୍ଗ କରି ମଥାକୁ ଟୁଙ୍ଗାରି ପ୍ରତିଜ୍ଞା କରନ୍ତି କେତେ ।
ସମସ୍ତେ ବଡ଼ ହେବାକୁ ବାଞ୍ଛୁଥାନ୍ତି ନ ଜାଣନ୍ତି ସେ ଯେ ମୋତେ ॥

ଶୁଣ ତୁ ମାରୁତି ଏସନକ ଗତି ଅଧିକ କହିବା କିକ ।
ବ୍ରାହ୍ମଣ ଯେବେ ମୋ ଭାବ ନ ଜାଣିଲି କ୍ଷତ୍ରିହିଁ ଜାଣିବ ଠିକ ॥
ତାହାର କଥା ବାରତା ଯେତେ ଯେତେ ତୋ ଆଗେ କହିବା ଶୁଣ ।
କରେ ଖଣ୍ଡାଧରି ପ୍ରତିଜ୍ଞା କରନ୍ତି ଦେଖାବନ୍ତି ଶୂରପଣ ॥

ଯୁଦ୍ଧରଙ୍ଗେ ପଶି ବଡ଼ିମା ପ୍ରକାଶି ବୋଲନ୍ତି ଏ ଦେହ ଯିବ ।
କ୍ଷତ୍ରୀ ବୋଲି ମୋତେ ଜଗତେ ବୋଲିବେ ଯୁଗେ ଯୁଗେ କଥା ଥିବ ॥
ଏମନ୍ତ କହି ଫୁରୁଣା ହୋଇ ସେହି ବହୁତ ପ୍ରତିଜ୍ଞା ଘେନି ।
ଆପଣା ବଡ଼ପଣକୁ ଧାଇଁଥାନ୍ତି ମୋତେ ନ ପାରନ୍ତି ଚହ୍ନି ॥

ଛତ୍ରୀ ଅବା ମୋର ଭବ ନ ଜାଣିଲ ଆଉ କେ ଜାଣିବ ମୋତେ ।
ଉଲଗ୍ନ ହୋଇ ଯେଉଁମାନେ ବୁଲନ୍ତି ସେହୁ ନ ଜାଣନ୍ତି ଚତ୍ତେ ॥
ସେ ଯେତେବ ଧ୍ୟାନ ଜ୍ଞାନ ସବୁ ଜାଣନ୍ତି ଦେଶ ଫେର କପଟ ସନ୍ତି ।
ଆସନରେ ବସି ଲୋଭ ମୋହ ନାଶି ଧୀରଭାବକୁ ଧରନ୍ତି ॥
ଲୋଚନ-ପଥରେ କିଛି ନ ଦେଖିବ କର୍ଣ୍ଣେ ନ ଶୁଣିବ ବାଣୀ ।
ପାଷାଣ ପ୍ରାୟ ଦେହ ଯେବେ କରିବ ତେବେ ସେ ମୋ ଭାବ ଜାଣି ॥

ଏ କଥା ଯେ ଛାଡ଼ି ମାୟାରେ ଯେ ପଡ଼ି ଧଇଲ ଆମ୍ଭର ଭେକ ।
ମୋହ ଭାବନା ଯେ କିଛି ନ ଜାଣଇ ପଶୁସଙ୍ଗେ ତାକୁ ଲେଖ ॥
ଇନ୍ଦ୍ରିକ ଦେଖାଇ ବାଇ ପ୍ରାୟ ହୋଇ ବୁଲୁଥାଇ ଅନୁବ୍ରତେ ।
ଆପଣା ବଡ଼ପଣକୁ ଧାଇଁଥାଇ ସେ କାହୁଁ ଜାଣିବ ମୋତେ ॥

ଶୁଣ ଆହେ। ହନୁ ପବନର ସୂନୁ କହିଲ ନକର ବାଣୀ ।
ସମାଧି ଯୋଗେ ଯେଉଁମାନେ ବସନ୍ତି ସେହି ତ ମୋତେ ନ ଜାଣି ॥
ଚକ୍ଷୁକୁ ତରାଟି ବନ୍ଦକରି ତୋଟି ଉପରକୁ ଦୃଷ୍ଟି ଦେଇ ।
ମନ୍ଦ୍ର ରି ଗୁପି ଆରମ୍ଭେ ରହିଲେ ଲୋକଙ୍କୁ ଭଣ୍ଡିବାପାଇଁ ॥

ପୂର୍ବର କଥା ଯେତେ ଯେତେ ବ୍ୟବସ୍ଥା ଭିତରେ ନୁହଇ ଦୃଢ ।
ମନକୁ ଯେଉଁଣ ପବଣ ପ୍ରକୃତ ଭମୁଥାଇ ଘୁରିଆଡ଼ ॥
ଇନ୍ଦ୍ରିୟ ମାଳ ଅରମ୍ଭ ହାଦେ କରି ନାସରେ ତୋଳନ୍ତି ବାଇ ।
ଆହାର ନିମନ୍ତେ ମୀନକୁ ଯେମନ୍ତେ ବକ ଜଗି ବସିଥାଇ ॥

ମଉନଭାବରେ ବସିବା ଠାବରେ ବସନ୍ତି ଆସନ ଯେନ ।
ଆପଣା ବଡପଣକୁ ଧାଇଁଥାନ୍ତି ମୋତେ ନ ପାରନ୍ତି ଚିହ୍ନି ॥
ସମାଧି କଥା ଯେତେ ଯେତେ ବ୍ୟବସ୍ଥା ବିସ୍ତାରି କହିଲୁ ତୋତେ ।
କୋଟି ତୀର୍ଥରେ ଯେ ସ୍ନାହାନ କରନ୍ତି ସେହୁ ନ ଜାଣନ୍ତି ମୋତେ ॥

ଉଦାସ ହୋଇ ଜ୍ଞାନୀପଣ ଦେଖାଇ ବୁଲୁଥାଇ ରାଜ୍ୟସାର ।
ଦେହେଁ ଗୁପ୍ତପାଯେନ ଲୋକଙ୍କୁ ବୋଲନ୍ତି ଏତେ ତୀର୍ଥ କଲି ଦେଖ ॥
ଗଙ୍ଗା ଗୋଦାବରୀ ବାରାଣସି ପାରି ହେଙ୍ଗୁଳା ଦେଖିଲି ଯାଇ ।
ଶଙ୍ଖ ଚକ୍ର ଚିହ୍ନ ହୃଦରେ ବହିଲି ଦ୍ୱାରକା ପୁରକୁ ଯାଇ ॥

କୋଟିତୀର୍ଥ ମୋର ପାଦେ ଖଟିଅଛୁ ଏଥକୁ ନ ଲୁଚେ ପ୍ରତେ ।
ବଡ଼ାଇ କର ପର ଆଗେ କହନ୍ତ ସେ କାହୁଁ ଜାଣିବେ ମୋତେ ॥
ତୀର୍ଥର ବଧାନ ଏ ପ୍ରକାରେ ଜାଣ ଶୁଣ ତୁ ପବନବହ୍ନି ।
ହରାଣ ହୋଇ ଯେଉଁ ମାନେ ଅଛନ୍ତ ସେହୁ ନ ଜାଣନ୍ତ କହ୍ନୁ ॥
ଅନ୍ନ ନ ଖାଇ ପ୍ରାଣୀମାନ କହୁ ହୋଇଥାଇ ଭେକଧାରୀ ।
ଗୃଡଳ ପକ୍ଷୀ ଯେସନେ ଆକାଶକୁ ବସିଥାଇ ଆଶା କରି ॥

ହରାଣ ହୋଇଣ ବସିଥାଇ ପୁଣ ବାଘରୁ ଥାଇ ତା ଚଉ୍ରେ ।
ବ୍ରହ୍ମଜ୍ଞାନୀ ବୋଲି ସମସ୍ତେ ବୋଲିବେ ଏ ଭେକ ଦେଖିଲେ ମୋତେ ॥
ଯୋଗୀ ବୋଲାଇ ଯେଉଁମାନେ ଅଛନ୍ତ ସେହୁ ନ ଜାଣନ୍ତ ମୋତେ ।
ତୁମ୍ଭେ ନ ମାନଲେ ଆଉ କେ ମାନବ ତୁମ୍ଭେ ଜାଣ କନା ମୋତେ ॥

ଶ୍ରବଣ ଯେ ଚର ମୁଦ୍ରା ଯେ ଭଶ ଭିଖ ମାଗିବାକୁ ଯାଇ ।
ଶ୍ୱାନ ଯେସନେ ଖଡକୁଡ଼େ ବସଇ ସବୁଦ୍ୱାରେ ବୁଲୁଥାଇ ॥
ଦେହରେ ଧୂଳି ବଭୂତ ହୋଇ ବୋଲ ଯେମାନେ ବୋଲନ୍ତ ଯୋଗୀ ।
ବୋଲନ୍ତ ଅମ୍ଭେ ଯେ ଭିକ୍ଷା ମାଗିବାକୁ ଅଇଲୁଁ ଏଠାକୁ ବେଗି ॥

ବଦ୍ଧନ ହୋଇ ମଦ୍ୟ କହ୍ନୁ ଖାଇ ଲୋଚନ କରନ୍ତ ରଙ୍ଗ ।
ଥିଲାର ଘର ତ ସ୍ୱଭାବେ ବଥଇ ନ ଥିଲା ଘରକୁ ଠେଙ୍ଗ ॥
ଯା ଘରେ କାହିଁ ମାଗିବା ନ ଯୋଗାଇ କଟାଳ କରନ୍ତ ସହୁଁ ।
ମାୟାମୋହ ତାଙ୍କ ଜାଗତ ହୁଅଇ ସେ ମୋତେ ଚହ୍ନିବ କାହୁଁ ॥

ଯୋଗୀଙ୍କର କଥା ଏମନ୍ତ ବ୍ୟବସ୍ଥା ଶୁଣ ତୁ ପବନସୁତ ।
ଗୁମ୍ଫା ଭିତରେ ଯେ ସିଦ୍ଧ ବୋଲାଇଣ ସାଧୁଥାନ୍ତ ଜ୍ଞାନବାଟ ॥
ସେ ମୋହର ଭାବ ନ କରଣ ଠାବ ପଦ୍ମତଣିଖକୁ ଯାନ୍ତ ।
ଲୋକ ଭଣ୍ଡିବାର ଆରମ୍ଭ ଦେଖାଇ ମହନ ଭବେଣ ଥାନ୍ତ ॥

ଇନ୍ଦ୍ରମାନେ ଯେ ମାଟିର ଭିତରେ କରନ୍ତ ଯେତ୍କେ ବବର ।
ସେମାନେ ତ ବ୍ରହ୍ମଜ୍ଞାନ ନ ଜାଣନ୍ତ ଏହା କେମନ୍ତ ପ୍ରକାର ॥
ଯେ ମୋର ଭାବକୁ ନ କଣବ ଠାବ ସେ କର୍ମୀ ତାହିଁ କା ଗଲା ।
ବନ ଗିର ସବୁ ତ ଏକତ୍ର ଯେଉଁ ଠାରେ ଥିଲେ ଥିଲା ॥

ମନୁଷ୍ୟ ସେ ତାର ଅନ୍ତନ୍ତିଁ ଅପାର ବଚନେ ନୁହଇ କହୁ ।
ସ୍ଥାବର ଜଙ୍ଗମ ଏ କୀଟ ପତଙ୍ଗ ସବୁ ରୂପ ପାରେ ହୋଇ ॥
ସୂର୍ଯ୍ୟ ସଙ୍ଗତେ ସୂର୍ଯ୍ୟ ହୋଇ ପାରଇଁ ଅଗ୍ନି ସଙ୍ଗେ ଥାଇଁ ମିଶି ।
ଜଳ ସଙ୍ଗତେ ଜଳ ହୋଇ ପାରଇ ଚନ୍ଦ୍ରସଙ୍ଗେ ହୋଇ ଶଶୀ ॥
ପବନ ତୁଲେ ପବନ ସେ ହୁଅଇ ଶୂନ୍ୟ ତୁଲେ ଶୂନ୍ୟ ଘୋଟି ।
ପାଷାଣ ତୁଲେ ପାଷାଣ ହୋଏ ପୁଣ ମାଟି ସଙ୍ଗେ ହୋଏ ମାଟି ॥

ଇନ୍ଦ୍ର ତୁଲେ ଇନ୍ଦ୍ର ହୋଇ ମୁଁ ପାରଇଁ ଯମ ତୁଲେ ହୋଇ ଯମ ।
ଈଶ୍ୱର ତୁଲେ ଈଶ୍ୱର ମୁଁ ହୁଅଇ ବ୍ରହ୍ମ ତୁଲେ ହୋଇ ବ୍ରହ୍ମ ॥
ସାଧୁ ସଙ୍ଗତେ ସାଧୁ ହୋଇ ପାରଇଁ ସୁଖୀ ସଙ୍ଗେ ହୋଇ ସୁଖୀ ।
କୁବେର ତୁଲେ କୁବେର ମୁଁ ହୁଅଇ ନିର୍ଦ୍ଧନ ସଙ୍ଗତେ ଦୁଃଖୀ ॥

ରାଜା ସଙ୍ଗତେ ରାଜା ହୋଇ ପାରଇଁ ପାତ୍ର ତୁଲେ ପାତ୍ରପଣ ।
କବି ସଙ୍ଗତେ କବି ହୋଇ ପାରଇଁ ମନ୍ତ୍ରୀ ସଙ୍ଗେ ମନ୍ତ୍ରୀଗଣ ॥
ନଦୀ ସଙ୍ଗତେ ନଦୀ ହୋଇ ପାରଇଁ ବନ୍ଧୁ ସଙ୍ଗେ ହୋଇ ବନ୍ଧୁ ।
ମେରୁ ସଙ୍ଗତେ ମେରୁ ହୋଇ ପାରଇ ସମୁଦ୍ର ସଙ୍ଗତେ ସିନ୍ଧୁ ॥

ଅଜାତି ତୁଲେ ଅଜାତି ହୋଇ ପାରେ ଜାତି ତୁଲେ ହୋଇ ଜାତି ।
ରାଜା ସଙ୍ଗତେ ରାଜା ହୋଇ ପାରଇଁ ସିଂହ ସଙ୍ଗେ ମୃଗପତି ॥
ସ୍ୱର୍ଗ ତୁଲେ ସ୍ୱର୍ଗ ହୋଇ ମୁଁ ପାରଇ ମର୍ତ୍ତ୍ୟ ତୁଲେ ହୋଇ ମର୍ତ୍ତ୍ୟ ।
ପାତାଳ ତୁଲେ ପାତାଳ ହୋଇ ପାରେ ତ୍ରିଭୁବନକୁ ସର୍ତ୍ତ୍ୟ ॥

ତାହା ଭାବନା ମୁଁ ଏକାହିଁ ଜାଣଇଁ ମୋହ ଭାବ ଜାଣେ ସେହି ।
ନୀର କ୍ଷୀର ଯେହ୍ନେ ଅଭେଦ ପୀରତି ବାରି ନ ପାରନ୍ତି କେହି ॥
କାଠରୁ ବହ୍ନି ଯେସନେକ ପ୍ରକାରେ ପୁଷ୍ପରୁ ବାସନା ବାସି ।
ଜୀବରେ ଜୀବ ପରମରେ ପରମ ଯେହ୍ନେ ଥିବେ ମିଶାମିଶି ॥

ସଂସାର ଭିତରେ ଯେତେକ ପଦାର୍ଥ ସବୁ ଠାବକୁ ସେ ତୁଲ ।
ତାହାଙ୍କୁ ସମ ଦେବାକୁ ତୁଲ କାହିଁ ତ୍ରିପୁରେ ସମତୁଲ ॥
ମନରେ ଯାହା ସେ କଳ୍ପନା କରଇ ସେହିକ୍ଷଣି ତା ହୁଏ ପ୍ରାପତ ।
ଇନ୍ଦ୍ରିୟ ରୂଢ ଯେବେ ଦୂରକୁ ସେ ନାହିଁ ବୋଲନ୍ତି ଆମ୍ଭେ ପଣ୍ଡିତ ॥

ସ୍ଥାବର ଜଙ୍ଗମ ଏ କୀଟ ପତଙ୍ଗ ମୋ ଭକ୍ତକୁ ସ୍ଥାନ କର ।
ସାତବରଷ ପୁଅ ମୋତେ ଭାବିଲା ଦେଲି ତାକୁ ସ୍ୱର୍ଗପୁର ॥
ମୁଁ ହାଦେ ଯାହାକୁ ପ୍ରସନ୍ନ ହୋଇଲି ସେହୁ ସେ ଜାଣଇ ମୋତେ ।
ଧ୍ରୁବ ନଚନ ବୋଲି ଏଣ୍ଡା ଜାଣିବ ଶୁଣ ତୁ ପବନସୁତେ ॥
କୀଟର ଭାବକୁ କ୍ଷଣେହେଁ ପ୍ରସନ୍ନ ନାମ ମୋ ଟେରଣମେରୁ ।
କଷଣି ପୁନା ପ୍ରାସ୍ତ କରି କହଇ ମହିମା କେ ଅନ୍ତ କରୁ ॥

ପ୍ରଭୁ ପରମଳ କେମନ୍ତେ ଜାଣିବା ଭୃତ୍ୟକୁ ଯେବେ କହିଲି ।
ଭୃତ୍ୟ ପରମଳି କେମନ୍ତେ ଜାଣିବା କଷ୍ଟୁଁ ଯେ ଉଦ୍ଧରିଲି ॥
ରାଜା ପରମଳ କେମନ୍ତେ ଜାଣିବା ବଗୃରି କହିବା ଧର୍ମ ।
ମନ୍ତ୍ରୀ ପରମଳ କେମନ୍ତେ ଜାଣିବା କ୍ଷତ୍ରୀ ସଙ୍ଗେ ସରସମ ॥

ଗୃହୀ ପରମଳ କେମନ୍ତେ ଜାଣିବା ଚହ୍ନିପାରେ ଯେବେ ବୃତ୍ତି ।
ଦାସୀ ପରମଳ କେମନ୍ତେ ଜାଣିବା ଦିଅଇ ଯେମନ୍ତ କ୍ଷତ୍ରୀ ॥
କ୍ଷତ୍ରୀ ପରମଳ କେମନ୍ତେ ଜାଣିବା ଯୁଦ୍ଧେ ଆଗଭର ହୋଇ ।
ପଦ୍ମ ପରମଳ କେମନ୍ତେ ଜାଣିବା ଶିଶିରରେ ହତ ହୋଇ ॥

ବନ୍ଧୁ ପରମଳ କେମନ୍ତେ ଜାଣିବା ସବୁଦିନେ ପ୍ରୀତି ଥାଇ ।
ଅଶ୍ୱ ପରମଳ କେମନ୍ତେ ଜାଣିବା ନ ଭାଜିବ କାଣ୍ଡ ଦୁଇ ॥
ମିତ୍ର ପରମଳ କେମନ୍ତେ ଜାଣିବା ହୃଦସ୍ତରେ ଥିବ ଦୟା ।
ସନ୍ଥ ପରମଳ କେମନ୍ତେ ଜାଣିବା ଜନ୍ତୁରେ କରିବ ଦୟା ॥

ମାତା ପରମଳ କେମନ୍ତେ ଜାଣିବା ପୁତ୍ରକୁ ନ ଥିବ ମାନ ।
ଧର୍ମ ପରମଳ କେମନ୍ତେ ଜାଣିବା ଦରିଦ୍ର ଲୋକଙ୍କୁ ଦାନ ॥
ଗ୍ରାମ ପରମଳ କେମନ୍ତେ ଜାଣିବା ଯାହା ଲୋଡ଼ା ତାହା ପାଇ ।
ଘର ପରମଳ କେମନ୍ତେ ଜାଣିବା ଥିଲି ନ ଥିଲହେଁ ଯାଇ ॥

ଶାଠ ପରମଳ କେମନ୍ତେ ଜାଣିବା ଦେଶକୁ ନ କରେ ତାଟି ।
ସିଦ୍ଧ ପରମଳ କେମନ୍ତେ ଜାଣିବା କାହାକୁହେଁ ନାହିଁ ଭେଟ ॥
ବନ ପରମଳ କେମନ୍ତେ ଜାଣିବା ନ ଥାଇ ଯହିଁରେ ବାଇ ।
ଳ ପରମଳ କେମନ୍ତେ ଜାଣିବା ନ ଥାଇ ମରୁଡ଼ି ଧୋଇ ॥

ସ୍ନାନ ପରମଳ କେମନ୍ତେ ଜାଣିବା ଯେତେଣ ଶିବ ତେତେଣ ଲାଭ ।
ଚିତ୍ତ ପରମଳ କେମନ୍ତେ ଜାଣିବା ଥାଇ ଯେବେ ସ୍ମରନ୍ଧବ ॥
ମନ ପରମଳ କେମନ୍ତେ ଜାଣିବା ସୁଜନ ଗୋଷ୍ଠିକି ଯାଇ ।
ଶିଷ୍ୟ ପରମଳ କେମନ୍ତେ ଜାଣିବା ଗୁରୁପାଦେ ମନଦେଇ ॥
ଯୁବା ପରମଳ କେମନ୍ତେ ଜାଣିବା ଯେ ନୁହନ୍ତି କାମେ ବାଇ ।
ସ୍ତିରୀ ପରମଳ କେମନ୍ତେ ଜାଣିବା ଗେରସ୍ତ ସେବାରେ ଥାଇ ॥

କଳି ପରମଳ କେମନ୍ତେ ଜାଣିବା ଅପ୍ରାଧ ଯହିଁ ନ ଥାଇ ।
ଭୋଜନ ପରମଳ କେମନ୍ତେ ଜାଣିବା କ୍ଷୁଧା ରଖି ଯେବେ ଖାଇ ॥
ବାଧା ପରମଳ କେମନ୍ତେ ଜାଣିବା ତରକ ନ ଥିବ ପେଟ ।
ଯୁଦ୍ଧ ପରମଳ କେମନ୍ତେ ଜାଣିବା ତୁଲ ପର୍ବତର ପୃଷ୍ଠ ॥

ପାଦ ପରମଳ କେମନ୍ତେ ଜାଣିବା ଯହିଁ ଇଚ୍ଛା ତହିଁ ଯାଇ ।
ଗାଈ ପରମଳ କେମନ୍ତେ ଜାଣିବା ନ ଛନ୍ଦ ଯେ ଦୁହିଁ। ଯାଇ ॥
ସନ୍ଥ ପରମଳ କେମନ୍ତେ ଜାଣିବା ଦସ୍ତାରେ ହୋଇବ ଟାଣ ।
ପ୍ରଜା ପରମଳ କେମନ୍ତେ ଜାଣିବା ନ ଲଙ୍ଘିବ ରାଜାଆଣ ॥

ସନ୍ଥ ପରମଳ କେମନ୍ତେ ଜାଣିବା ଦେବତା ସ୍ଥାନକୁ ଯାଇ ।
ମୂର୍ଖ ପରମଳ କେମନ୍ତେ ଜାଣିବା କୃଷ୍ଣ ନାମ ଯେବେ ଗାଇ ॥
ଚକ୍ଷୁ ପରମଳ କେମନ୍ତେ ଜାଣିବା ଚକ୍ରଧର ହୁଏ ଦୃଶ୍ୟ ।
କର୍ଣ୍ଣ ପରମଳ କେମନ୍ତେ ଜାଣିବା ଶୁଣୁ ଥାଇ ହରି ରସ ॥

କଥା ପରମଳ କେମନ୍ତେ ଜାଣିବା ହରି ହରି ହେଉଥାଏ ।
ମଥା ପରମଳ କେମନ୍ତେ ଜାଣିବା ନତ ଦଣ୍ଡବତ ହୁଏ ॥
ହୃଦ ପରମଳ କେମନ୍ତେ ଜାଣିବା ଘରୁଥିବା ଏକା ହରି ।
ବ୍ରତ ପରମଳ କେମନ୍ତେ ଜାଣିବା ଏକାଦଶୀ ଯେବେ କରି ॥

ବୈଦ୍ୟ ପରମଳ କେମନ୍ତେ ଜାଣିବା ବ୍ୟାଧି ଚିହ୍ନି ଯେ ପାରିବ ।
କରଣ ନିର୍ମଳ କେମନ୍ତେ ଜାଣିବା ହସ୍ତା ହୁଏ ଯେବେ ଦମ୍ଭ ॥
ସାରୀ ପରମଳ କେମନ୍ତେ ଜାଣିବା ସଭାରେ କହିବ ସତ ।
ଯୋଗୀ ପରମଳ କେମନ୍ତେ ଜାଣିବା ପାପରୁ ଥିବ ବିରତ ॥

ଗୁଣ ପରମଳ କେମନ୍ତେ ଜାଣିବା ବହୁତ ଦୂରକୁ ଯାଇ ।
ଦେଶ ପରମଳ କେମନ୍ତେ ଜାଣିବା ବାଦ ବିସମ୍ବାଦ ନାହିଁ ॥
ଭକ୍ତ ପରମଳ କେମନ୍ତେ ଜାଣିବା ସବୁଠାରେ ଥାଇ ଝଳ ।
ଭଣେ କୃଷ୍ଣଦାସ ଏ ଭବସାଗରୁ ତ୍ରାହି କର ବନମାଳ ॥



ହନୁମନ୍ତ ମୁଖ ଶୁଣି ପଦ୍ମମୁଖ ବୋଇଲେ କରୁଣା ବନ୍ଧୁ ।
ଅନେକ ପ୍ରକାରେ ମୋହର ମହିମା କେ ଅନ୍ତ କରିବ କାହିଁ ॥
ମୋହର ଭାବ ଯେ ମୂର୍ଖ ସେ ଜାଣଇଁ ଆବର ଯାହାର ଦୟା ।
ଗଙ୍ଗାବାଲି ଗଣି କେ ଅନ୍ତ କରିବ ସେହିମତ ମୋର ମାୟା ॥
ଶୁଣି ହନୁମନ୍ତ ପାଦପଦ୍ମେ ଶିର ଦେଇ ପ୍ରଣିପାତ କଲା ।
ଶ୍ରୀ ଜଗନ୍ନାଥଙ୍କୁ ମେଲାଣି ମାଗିଣ ଆପଣା ସ୍ଥାନକୁ ଗଲା ॥
ଏଥୁ ଅନନ୍ତରେ ଯୁଧିଷ୍ଠିରଦେବଙ୍କ ଯଜ୍ଞହିଁ ହୋଇଲା ଶେଷ ।
ଆଜ୍ଞା ପ୍ରମାଣେ ନୃପତିମାନେ ଗଲେ ଯେ ଯାହାର ନିଜ ଦେଶ ॥
ଦୁର୍ଯ୍ୟୋଧନ ରାଜା ଅପମାନ ପାଇ ହସ୍ତିନା ପୁରକୁ ଗଲା ।
ସମଦଣ୍ଡ ଘେନି ଜରାସନ୍ଧ ସୁତ ମଘଦେଶେ ବିଜେ କଲା ॥
ନିଜ ଦେଶକୁ ଯେ ବିରାଟ ନୃପତି ଶୁଭଯୋଗେ ଗଲେ ଚଳି ।
ନିଜ ସଦନେ ଯାଇଣ ପରବେଶ ଦମଘୋଷ ମହାବଳୀ ॥
ବାଣା ବଜ୍ର ନାଭ ଗୋବିନ୍ଦ ସହିତେ ଯେ ଯାହା ପୁରକୁ ଯାଇ ।
କାଶୀ ଦେଶରେ କାଶୀ ନାମେ ନୃପତି ବହନ ପ୍ରବେଶ ହୋଇ ॥
ବୃହସ୍ପତି ଘେନି ଇନ୍ଦ୍ରଦେବତା ଯେ ସ୍ୱର୍ଗରେ ବିଜୟ କଲେ ।
ଯମ ବରୁଣ ପବନ ବୈଶ୍ୱାନର ଯେ ଯାହା ପୁରକୁ ଗଲେ ॥
ମରାଳ ପିଠିରେ ଯଶୋବନ୍ତ ପୁରେ ବ୍ରହ୍ମା ବିଜେ କଲେ ଯାଇ ।
ସପତ ସିନ୍ଧୁରେ ପ୍ରବେଶ ହୋଇଲେ ରତ୍ନାକର ନୃପସାଇଁ ॥
ତେତିଶକୋଟି ଦେବତାମାନେ ତହୁଁ ଯେ ଯାହା ପୁରକୁ ଗଲେ ।
ବୃଷଭ ପିଠିରେ ସଦାନନ୍ଦ ପ୍ରଭୁ କପିଳାସେ ବିଜେ କଲେ ॥
ଅଗସ୍ତି ଅଙ୍ଗିରା ଭୃଗୁ ପରାଶର ପଉଲସ୍ତି ବ୍ରହ୍ମବେତ୍ତା ।
ନାରଦମୁନି କଶ୍ୟପ ମହାଯତି ବ୍ରହ୍ମାଣ୍ଡେ ଏକ ଅପ୍ରଚେତା ॥

ସମସ୍ତ ମୁନି ଯେ ଯାହା ମାନ୍ୟ ଘେନି ପ୍ରବେଶ ହୋଇଲେ ଆସି ।
କୁବେର ମୁଖକୁ ଅନାଇ ବୋଇଲେ କରୁଣା ଜଳଧିରାଶି ॥
ତୁ ହୋ ଧନପତି ହୋଇ ତୋଷମତି ଆମ୍ଭର ବଚନ ଶୁଣ ।
ଯେତେକ ପଦାର୍ଥ ଯୁଧିଷ୍ଠି ଦେବଙ୍କୁ ଯଜ୍ଞରେ ଦେଇଛ ତୃଣ ॥
ସେ ଧନ ଆମ୍ଭର କୋଠ ଭଣ୍ଡାରର ସମସ୍ତ ପାଇଲୁଁ ଆମ୍ଭେ ।
ପଣ୍ଡୁ ନୃପତିଙ୍କ ଯଜ୍ଞରେ ଲଗିଲା କିଛି ନ ବିଚାର ତୁମ୍ଭେ ॥
ଯୁଧିଷ୍ଠି ଆମ୍ଭର ମାଉସୀ କୁମର ପରାପର ନାହିଁ କିଛି ।
ଆମ୍ଭେ ତ ତାହାଙ୍କୁ ଦେବା ଘେନିବାକୁ ବର୍ତ୍ତିମାନ ନୋହୁ କିଛି ॥
କେବଳ ପିତାଙ୍କ କଷ୍ଟ ଫେଡ଼ିବାକୁ ଯଜ୍ଞକୁ ଆରମ୍ଭ କଲେ ।
ଲକ୍ଷେ ନୃପତିଙ୍କି ବରଣ କରିଣ ରତ୍ନ ଅଳଙ୍କାର ଦେଲେ ॥

ସେ ଧନ ତାହାଙ୍କୁ ଦେବାକୁ ଆମ୍ଭେତ ବର୍ତ୍ତିମାନ ନୋହୁଁ ବାବୁ ।
ଆମ୍ଭର ଯେତେକ ଦ୍ରବ୍ୟ ଅଛି ଜାଣ ତାହାଙ୍କର ସିନା ସବୁ ॥
ଯେତେକ ଦ୍ରବ୍ୟ ଦେଇଥିଲୁ ସେ ସବୁ ଭଣ୍ଡାର ଠାବକୁ ଯାଅ ।
ଗୁଣକେ ସହସ୍ରେ ଗୁଣେ ପୂରିଅଛି ଦେଖି ତୁ ପରତେ ପାଅ ॥
ଶୁଣି କୁବେର ଶିରରେ ଦେଇ କର ଯୋଡ଼ିଣ ପ୍ରଣାମ କଲା ।
ଶ୍ରୀଜଗନ୍ନାଥଙ୍କୁ ମେଲାଣି ମାଗିଣ ଆପଣା ପୁରକୁ ଗଲା ॥
ଯୁଧିଷ୍ଠି ଦେବଙ୍କୁ ଦଣ୍ଡବତ କରି ଆପଣେ ଭକତବନ୍ଧୁ ।
ଦ୍ୱାରକା ଭୁବନେ ପ୍ରବେଶ ହୋଇଲେ କୃପା କରି କୃପାସିନ୍ଧୁ ॥

ଏଥୁ ଅନନ୍ତରେ ଅମର ସ୍ୱର୍ଗରେ ନିରଞ୍ଜନ ଧର୍ମରାୟେ ।
ପଞ୍ଚପାଣ୍ଡବଙ୍କୁ ଦେଖିବା ନିମନ୍ତେ ମର୍ତ୍ତ୍ୟଭୁବନେ ବିଜୟେ ॥
ମନେ ମନେ ଗୁଣି ଅନ୍ତର୍ଗତେ ପୁଣି ବିଚାର କଲେ ଏମନ୍ତ ।
ପୁତ୍ର ମୋର ଯେବେ ଯଜ୍ଞ କରିଅଛି ବଢ଼ିବା ତାହାର ସତ ॥

ମର୍ତ୍ତ୍ୟର ଲୋକଙ୍କୁ ବଢ଼ିବା ବୋଲି ଯେ ମନରେ ପାଇଲେ ଶଙ୍କା ।
ରଙ୍ଗପଦ୍ମ ପ୍ରାୟ ଲୋଚନ ଦିଶିଲା ବେଦପାଦ କଲେ ବଙ୍କା ॥
ନିଜରୂପ ଯେ ଲୁଚାଇ ନିରଞ୍ଜନ ଦିଶିଲେ ବିରୂପଭାବ ।
ଧର୍ମଯୁଧିଷ୍ଠି କେଉଁ ଠାରେ ଅଛନ୍ତି ପଚାରନ୍ତି ଠାବ ଠାବ ॥

ଜଣ ଜଣକେ ନିରଞ୍ଜନ ଗୋସାଇଁ ପଶ୍ଚିମ ଯାଆନ୍ତେ ବାଟେ ।
ଲୋକେ ବୋଇଲେ ଯାଗଶାଳେ ଅଛନ୍ତି ଭେଟିବ ଏହି ନିକଟେ ।।
ଏମନ୍ତେ ତହିଁ ଥୋକାଏ ଦୂର ଯାଇ ଆଜ୍ଞା ଦେଲେ ବ୍ରହ୍ମପିତେ ।
ଯୁଧିଷ୍ଠିରଦେବଙ୍କ ଶ୍ରୀମୁଖରେ ଜଣାଅ ଅନ୍ନଦାନ ଦେଉ ମୋତେ ।।
ଏମନ୍ତେ ତହିଁ ଥୋକାଏ ଦୂର ଯାଇ ପ୍ରବେଶ ହୋଇଲେ କତ ।
ଯାଗଶାଳଦ୍ୱାରେ ପ୍ରହରୀ ଅଛନ୍ତି ପବନସୁତ ମାରୁତ ।।
ଭୀମଙ୍କୁ ଗୁହି ନିରଞ୍ଜନ ଗୋସାଇଁ ଆଜ୍ଞା ଦେଲେ ବ୍ରହ୍ମପିତେ ।
ଯୁଧିଷ୍ଠିରଦେବଙ୍କ ଶ୍ରୀମୁଖରେ ଜଣାଇ ଅନ୍ନଦାନ ଦିଅ ମୋତେ ।।
ତାହା ଶୁଣି ଭୀମ ହୃଦୟରେ ତମ ବହିଲା ପଣ୍ଡୁତନୁଜ ।
ମନେ ବିଗ୍ଭରିଲା ଚଣ୍ଡାଳ ମୁଖକୁ ପ୍ରଭୁବେ ଗୁହିଁଲ ଆଜ ।।
ଏମନ୍ତେ ତହିଁ ସେ କୋପଭର ହୋଇ ବହନ ମେ ଚଳିଗଲା ।
ପାପିଷ୍ଠ ଚଣ୍ଡାଳ ଅନ୍ନ ମାଗୁଅଛୁ ଯୁଧିଷ୍ଠି ଆଗେ କହିଲା ।।
ଭୀମସେନ ବାଣୀ ଏସନକ ଶୁଣି ବୋଇଲେ ପାଣ୍ଡୁନନ୍ଦନ ।
ଯଜ୍ଞଶାଳ ଅନ୍ନ ସରିଲାତ ଏବେ ଆଉ କାହିଁ ଅନ୍ନଦାନ ।।
ତା ଶୁଣି ମାରୁତ ହୋଇ ହୃଷ୍ଟମତ ବାହୁଡ଼ି ଅଇଲା ବେଗେ ।
ତତକ୍ଷଣେ ଯାଇଁ ପ୍ରବେଶ ହୋଇଲା ଧର୍ମ ନିରଞ୍ଜନ ଆଗେ ।।
ଶ୍ରୀମୁଖରେ ଜଣାଇ ବିନୟୀ ହୋଇଣ କହିଲା ପବନସୁତ ।
ଯାଗ ସରିଲେ ଏତେବେଳେ ଆଉ ଲୋଡ଼ିଲେ କାହୁଁଅଛୁ ଘୃତ ।।
ତାହା ଶୁଣି ଧର୍ମ ବୋଇଲେ ହେ ଭୀମ କହୁଛି ସୁଖ ନୋହିଲା ।
ଯୁଧିଷ୍ଠି ରାଜନ ନ ଦେଇ ଯେ ଅନ୍ନ କପଁ ମୋଠାକୁ ନଇଲା ।।
ସେ ଯେବେ ଆସି ଆପଣେ ଏଥି ବସି ପରଶିବ ଯଜ୍ଞ ଅନ୍ନ ।
ତେବେ ଆମ୍ଭ କ୍ଷୁଧା ନିବୃତ୍ତି ହୋଇବ ଏ କଥା ଧ୍ରୁବ ବଚନ ।।
ନୋହିଲେ ମୁହିଁ ନିରାଶ ଯେବେ ହୋଇ ବାହୁଡ଼ି ଯିବଇଟି ଆଜ ।
ଯେତେ ଧର୍ମ କଲ ବ୍ୟର୍ଥ ହୋଇଲା ଲୋକାନ୍ତେ ପାଇବ ଲାଜ ।।
ତା ଶୁଣି ମାରୁତ ହୋଇ ଦୁଃଖମତ ସେଠାରୁ ଚଳିଲେ ଖରେ ।
ବାହୁଡ଼ି ଯାଇଣ ବାରତା କହିଲେ ଯୁଧିଷ୍ଠିରଦେବ ଶ୍ରୀମୁଖରେ ।।

କର୍ମେ ଚଣ୍ଡାଳ ଯୁବତେ ହୋଇ ଖେଳ ଦେଖିବାକୁ ଅନ୍ତର୍ଦ୍ଧାନ ।
ବୋଇଲା ଯୁଧିଷ୍ଠି ଆଗରେ କହ ସେ ଦେଉ ମୋତେ ଅନ୍ନଦାନ ॥
ତାଙ୍କ ମୁଖ ଦେଖି ହୋଇବ ମୁଁ ସୁଖୀ କାହିଁପାଇଁ ଏଥି ଥିବ ।
କଥା ଦୁଇ ଚାରି ସକ୍ଷେପେ କହିଣ ମୋହ ସୁଖେ ମୁହିଁ ଯିବି ॥
ନୋହିଲେ ତାହାର ଯଜ୍ଞର ବେଭାର ବିଅର୍ଥ ହୋଇବ ଏଣେ ।
ତିନିପୁରେ ଅପକୀର୍ତ୍ତି ଅରଜିବ ଧର୍ମଶାସ୍ତ୍ର ପରମାଣେ ॥

ଭୀମସେନ ବାଣୀ ଏସନକ ଶୁଣି ବୋଇଲେ ଦ୍ରୌପଦୀସାଇଁ ।
କାହିଁପାଇଁ ଏତେ କଟାଳ କରୁଛୁ ଦେଖିବା ତାହାକୁ ଯାଇ ॥
ବହନ ଚାଲ କହୁହିଁ ନାହିଁ ଭଲ ନୋହିଲ ଆମ୍ଭଙ୍କୁ ବାପ ।
ଚଣ୍ଡାଳ ବଚନ ଶୁଣି ମୋ ମନକୁ ଲାଗୁଅଛି ବଡ଼ ତାପ ॥

ଏତେ ବୋଲି ପ୍ରଭୁ ଆସନ ତେଜିଣ ଉଠିଲେ ଧର୍ମଙ୍କ ଗୃଠ ।
ଯଜ୍ଞଶାଳଦ୍ୱାରେ ପ୍ରବେଶ ହୋଇଲେ ଧରାଇଲେ ଅନ୍ନ ପାଠ ॥
ଯୁଧିଷ୍ଠିଦେବଙ୍କ ଅନ୍ନପାଠ ଦେଖି ଆଜ୍ଞାଦେଲେ ନିରଞ୍ଜନ ।
ଏଡ଼େ ବାତୁଳ ତୁ କେମନ୍ତେ ହୋଇଲୁ ଶୁଣ ହୋ ପଣ୍ଡୁନନ୍ଦନ ॥

ଆମ୍ଭେ ଯେ ତୋତେ ଦେଖିବାର ନିମନ୍ତେ ଅଇଲୁଁ ଶରଧା କରି ।
କିପାଁ ଏ କଥାକୁ ବିଚାର ନ କରୁ ଅନ୍ନପାଠ ଅଛୁ ଧରି ॥
ଧର୍ମଙ୍କ ବଚନେ ଯୁଧିଷ୍ଠି ବୋଇଲେ ମନକୁ ମୋ ବଡ଼ ଦୁଃଖ ।
ଦଇବେ ତୁ ଯେ ଚଣ୍ଡାଳ ଜାତି ଅଟୁ କେମନ୍ତେ ଚାହିଁବି ମୁଖ ॥

ଯେଉଁ ଦିନେ ହାଦେ ଚଣ୍ଡାଳ ବଦନ ରାତି ପ୍ରଭାତେଣ ଚାହିଁ ।
ରବି ଅସ୍ତଯାଏ ଅନ୍ନ ନ ଖାଇଲେ ତେବେ ସେ ଏ ପାପ ଯାଇ ॥
ଯେବେ ତାହା ସଙ୍ଗେ କଥା ପରସଙ୍ଗେ ଦେବ କହୁହିଁ ଉତ୍ତର ।
ସେ ଦିନରେ ଷଡ଼ ସ୍ନାନ କଲେ ସେହୁ ଏ ପାପ ହୁଅଇ ଦୂର ॥

ଯୁଧିଷ୍ଠିଙ୍କ ବାଣୀ ଏସନକ ଶୁଣି ବୋଇଲେ ଧର୍ମ ଗୋସାଇଁ ।
ଚଣ୍ଡାଳ ମତି ଯାହାକୁ ବୋଲି ରାଜା ତୁ ତାହା ଜାଣିବୁ କାହିଁ ॥
ଏ ମୋର ବଦନ ଦେଖି କରି ହୀନ ତେଣୁ ତୁ କହିଲୁ ଏହା ।
ଭଲ ମନ୍ଦ ଆଉ ବିଚାର ନ କଲୁ ଅନ୍ତର୍ଗତେ ଅଛି ଯାହା ॥

ସମାର ଭିତରେ ରାଜା ହୋଇ ତୁ ଯେ ବୋଲାଉ ଧର୍ମନନ୍ଦନ ।
ଚଣ୍ଡାଳ ବୋଲି ଯାହାକୁ ବୋଲି ରାଜା, ମୋହ ଠାରୁଁ ଏବେ ଶୁଣ ।।
ବିପ୍ର ହୋଇ ଯେବେ ବସ୍ତ୍ରରେ ଭକତ ନ କରେ ପଣ୍ଡୁ ଦୁଲାଳ ।
କିମ୍ବା ସ୍ନାନ ହୋଇ ଯେବଣ ବ୍ରାହ୍ମଣ ତାହାକୁ ବୋଲି ଚଣ୍ଡାଳ ।।
ଦାନ୍ତକୁ ନ ଘଷି ଯେଉଁ ପ୍ରାଣିମାନେ କରନ୍ତି ଆହାର ପାନ ।
ସେହି ସେ ଚଣ୍ଡାଳ ଶାସ୍ତ୍ର ପରମାଣେ ଯୁଧିଷ୍ଠିର ଧୀରେ ଶୁଣ ।।

ଆବର ତୋତେ ବଚନେକ କହିବା ଶୁଣସି ହୋ ମହୀପାଳ ।
ପାଦ ନ ଧୋଇ ଯେ ଭୋଜନ କରନ୍ତି ତାଙ୍କୁଟି ବୋଲି ଚଣ୍ଡାଳ ।।
ଆବର ଏକ ଚଣ୍ଡାଳ କଥା ତୋତେ କହିବା ଯୁଧିଷ୍ଠି ରାଯେ ।
ତୃଷାରେ ଆରତ ହୋଇ ଯେ ଗୋଧନ ଜଳ ଭକ୍ଷିବାକୁ ଯାଏ ।।
ତାକୁ ଯେଉଁ ଲୋକ ବୃଥାରେ ଧମକ ଦେଇ ଘଉଡ଼ି ଦିଅଇ ।
ଧର୍ମଶାସ୍ତ୍ର ପରମାଣେ ବିଚାରିଲେ ଚଣ୍ଡାଳ ହାଦେଟି ସେହି ।।
ଶତ୍ରୁ ଠାରେ ଯାଇଁ ଶରଣ ପଶିଲେ ଯେବେ ସେ କରିବ ନାଶ ।
ତାହାକୁ ହାଦେ ଚଣ୍ଡାଳ ବୋଲି କରି ଶୁଣ ତୁ ପାଣ୍ଡୁର ଶିଷ ।।

ଆବର ଚଣ୍ଡାଳ ତୋତେ କହିଦେବା ଶୁଣ ତୁ ଯୁଧିଷ୍ଠି ରାଯେ ।
ଯେଉଁ ଯୁବତୀର ଗର୍ଭବାସ ଅଷ୍ଟ ନବମାସ ହୋଇଥାଏ ।।
କାମ ଆରତେ ସେହି ସ୍ତ୍ରୀ ସଙ୍ଗତେ ଅଙ୍ଗସଙ୍ଗ ହୋନ୍ତି ଯେହୁ ।
ବାଳହତ୍ୟା ଦୋଷ ତାହାକୁ ଲାଗଇ ଆରେକ ଚଣ୍ଡାଳ ସେହୁ ।।

ପାପ ପୁଣ୍ୟ ବେଳ ବିଚାର ନ କରି ବନକୁ ଯେ ପୋଡ଼ି ଦେଇ ।
କଣି ପ୍ରହରେ ତା ବଦନ ନ ଗ୍ରହୁଁ କାଢ ଚଣ୍ଡାଳଟି ସେହି ।।
ଦୁଃଖୀ ଲୋକଙ୍କୁ ଯେ ଦେବା ବୋଲି କିଛି ଆଶା ଦେଇଥାଇ ଯେହୁ ।
ନାହିଁ ବୋଲି ପଛେ ନିରାଶ କରଇ ଆରେକ ଚଣ୍ଡାଳ ସେହୁ ।।

ପଶୁମାନଙ୍କରେ ଗଧ ଯେ ଚଣ୍ଡାଳ ପକ୍ଷୀରେ ଚଣ୍ଡାଳ କାକ ।
ଯତି ହୋଇ ଯେବେ ହୃଦେ କୋପ ଥାଇ ସେହୁଟି ଚଣ୍ଡାଳ ଲେଖ ।।
ଆବର ତୋତେ ବଚନେକ କହିବା ଶୁଣ ତୁ ଦ୍ରୌପଦୀଯାଇଁ ।
ଗୁରୁଚରଣେ ତତପର ହୋଇଣ ସେବା ଭକ୍ତି ଯାର ନାହିଁ ।।

ଅତିଥି ଯାଇ ଦୁଆରେ ଛାଡ଼ି ହୋଇ ନ ପାଇ ବାହୁଡ଼ି ଯିବ ।
ପିତୃ ଲୋକମାନେ ନରକ ହୁଅନ୍ତି ବ୍ରହ୍ମହତ୍ୟାଟି ଲାଗିବ ॥
ଅତିଥି ଆସି ଦୁଆରେ ଥିବ ବସି କାହା କଲେ ନୁହେଁ ଭଲ ।
ନ ଦେଇ ତାଙ୍କୁ ଭୋଜନରେ ବସିଲେ ଅନ୍ନ ଗୋମାଂସର ତୁଲ୍ୟ ॥
ପିତୃଲୋକ ମାନେ ତା ଘ ରେ ମନେ ବିମୁଖେ ବାହୁଡ଼ି ଯାନ୍ତି ।
ଅଲକ୍ଷ ନମନ୍ତେ କୋଟି ପ୍ରଜାମାନ ହୁଅଇଟି ବିନାଶ୍ୟତି ॥

ଦେବାର୍ଚ୍ଚନ ପୂଜା ବେଦରେ ତୃଷ୍ଟ ଶତଧର୍ମ ଯାଏ କ୍ଷୟେ ।
ଅତିଥି ଅର୍ଚ୍ଚନା ବିନା ଯଜ୍ଞ ଧର୍ମ ସକଳ ନିଷ୍ଫଳ ହୁଏ ॥
ଗୁରୁ ଚଣ୍ଡାଳ ପିତା ଶତ୍ରୁ ସହିତେ ଅତିଥି ରୂପ ଯେ ଧର ।
ବାସୁଦେବ ପ୍ରାପ୍ତ ତାହାଙ୍କୁ ଦେଖିବୁ ପାଦ ପୂଜା ବିଧି କର ॥

ନତ୍ର ଗୃହ ଦାନ ପୁଷ୍କରଣୀମାନ ଯେତେ ଧର୍ମ ଏଥି ହୁଏ ।
ଅତିଥି ପୂଜା ଯେଉଁ ପ୍ରାଣୀ କରନ୍ତି, ଏତେ ଧର୍ମ ସେହୁ ପାଏ ॥
ଧର୍ମଙ୍କର ବାଣୀ ଏମନ୍ତ ଶୁଣି ବୋଇଲେ ସେ ନରନାଥ ।
କେମନ୍ତ ପ୍ରକାରେ ଧର୍ମ ଉଦେ ହୋଇ ଏ କଥା କହ ଯଥାର୍ଥ ॥

କେମନ୍ତ ପ୍ରକାରେ ପ୍ରବର୍ତ୍ତିଇ ଧର୍ମ କେମନ୍ତେ ହୁଏ ସ୍ଥାପନା ।
କେମନ୍ତ ପ୍ରକାରେ ନାଶ ଯାଇ ଧର୍ମ ଏହା ମୋତେ କହ କନା ॥
ଯୁଧିଷ୍ଠିର ବଚନେ ଧର୍ମ ଆଜ୍ଞା ଦେଲେ ଶୁଣ ତୁ ହୋ ଧର୍ମସୁତ ।
ଶତ୍ରୁରୁ ଧର୍ମ ଉତପତ୍ତି ହୁଅଇ ଦୟାରୁ ଧର୍ମ ପ୍ରାପତ ॥

କ୍ଷମା କଲେ ଧର୍ମ ସ୍ଥାପନା ହୁଅଇ କ୍ରୋଧ କଲେ ଯାଇ ନାଶ ।
ଧ୍ରୁବ ବଚନ ଏହା ବୋଲି ଜାଣିବୁ ଶୁଣ ତୁ ପଣ୍ଡୁର ଶିଷ ॥
ଧର୍ମଙ୍କର ବାଣୀ ଏମନ୍ତ ଶୁଣି ବୋଇଲେ ଯୁଧିଷ୍ଠିର ରାୟ ।
ପ୍ରଦେଶେ କଏ ମିତ୍ରପଣ କରଇ ଏ କଥା କହିବା ହୁଅ ॥

ଗୃହ ଧର୍ମେ କେ ମିତ୍ରପଣ କରଇ ବିପତ୍ତି କାଳେ କେ ସଖା ।
ମରିବାବେଳେ ମିତ୍ରପଣ କେ କରେ ବିସ୍ତାରି କହିବା ଏକା ॥
ଯୁଧିଷ୍ଠିର ବଚନେ ଧର୍ମ ଆଜ୍ଞା ଦେଲେ ଯାହା ପୁଚ୍ଛା କଲ ମୋତେ ।
ବିଦ୍ୟା ମିତ୍ରପଣ ବିଦେଶେ କରଇ ଭାରଯା ମଇତ୍ର ଘରେ ॥

ପାପ ପୁଣ୍ୟ ବେନି ଶୁଭାଶୁଭ ଦେନି କରୁଥାଇ ନିଜ କର୍ମ ।
ବିପତ୍ତିକାଳେ ଧନ ମିତ୍ର ହୁଅଇ ମରିବା କାଳକୁ ଧର୍ମ ॥
ନିରଞ୍ଜନ ବାଣୀ ଏମନ୍ତ ଶୁଣି ବୋଇଲେ ଦ୍ରୌପଦୀସାଇଁ ।
ତୀର୍ଥ ଜଳରେ ସ୍ନାନ ଦାନ କଲେ ଯେ କେତେ କେତେ ଧର୍ମ ପାଇ ॥
ଧର୍ମ ଯେ କହନ୍ତି ଶୁଣ ହେ ଯୁଧିଷ୍ଠିର ଯାହା ବୋଇଲୁ ଭଲେ ।
କୋଟି ତୀର୍ଥଫଳ ପ୍ରାପତ ହୁଅଇ ମନକୁ ନିର୍ମଳ କଲେ ॥

ବିଷ୍ଣୁ ମାୟାଧର ଜଗତ ରଚିଛି ଯୋଗୀଜନର ଜ୍ଞାନଭଙ୍ଗା ।
ଚିତ୍ତକୁ ହାଣ୍ଡିରେ ଶୁଦ୍ଧ କରି ପାରିଲେ ଗାଡ଼ିଆ ଜଳଟି ଗଙ୍ଗା ॥
ଧର୍ମଙ୍କ ବଚନେ ଯୁଧିଷ୍ଠିର ବୋଇଲେ କିଏ ସେ ଅଟେ ଅତୀର୍ଥ ।
ଆବର କଥାଏ ତୁମ୍ଭଙ୍କୁ ପୁଚ୍ଛିଲି କହ ବଚନ ଯଥାର୍ଥ ॥

ମନକୁ ମୋର ଅଦ୍ଭୁତ ଲାଗୁଅଛି ତେଣୁ ପୁଚ୍ଛା କରେ ଠିକେ ।
ମାତା ପିତା ଭଗ୍ନୀ ପୁତ୍ର ଭ୍ରାତାମାନେ ଏମାନେ ହୋଇଲେ କେ କେ ॥
ଯୁଧିଷ୍ଠିର ବଚନେ ଧର୍ମ ନିରଞ୍ଜନ ବୋଇଲେ କହିବା ଶୁଣ ।
ଧୈର୍ଯ୍ୟପଣ ଦେହଘରେ ଯାର ଥାଇ ପିତା ବୋଲି ସତ ଜାଣ ॥

ଶାନ୍ତି ସହିତ ଯା କ୍ଷମା ଅଟେ ଜନନୀ ପୁତ୍ର ବୋଲି ତାଙ୍କୁ ସତ ।
ଦୟା ବନ୍ଧୁ ବୋଲି ଶାସ୍ତ୍ରରେ କହିଛି ମନକୁ କହିଛି ଭ୍ରାତା ॥
ଧର୍ମଙ୍କ ବଚନେ ଯୁଧିଷ୍ଠିର ବୋଇଲେ ଆବର ପଚାରେ ଏହା ।
ସଂସାର ଭିତରେ ପଞ୍ଚଜନ କିଏ ବତ୍ରାଶ କହିବା ତାହା ॥

ଧର୍ମ ବୋଇଲେ ତୁ ଯାହା ପୁଚ୍ଛା କଲୁ ଶୁଣ ହେ ଧର୍ମ ନୃପତି ।
ପୁତ୍ର ହୋଇ ଯେତେ ଅବିବେକୀ ହୋଇବ ତାହାକୁ ରିପୁ ବୋଲନ୍ତି ॥
ଇନ୍ଦ୍ରିୟବଳର ସଂଗ୍ରାମ ଭୂର୍ଗଳ ଯେ ସେହୁଁ ପୋଡିକ ନମଇ ।
ବାଣ ବାଜିଲେ ଧୈର୍ଯ୍ୟବନ୍ତ ହୋଇ ରାଉତକୁ ଦେନ ଥାଇ ॥

ହିଂସ୍ର ହୋଇ ଦମ୍ଭପଣ ନ କରିବ ଜନ୍ମରେ ହେବ ସତ୍ୟ ।
ପଞ୍ଚଜନ ବୋଲି ଏମାନଙ୍କୁ କହୁ ଶୁଣ ହେ ଯୁଧିଷ୍ଠିର ରାୟ ॥
ଧର୍ମଙ୍କର ବାଣୀ ଏମନ୍ତ ଶୁଣି ବୋଇଲେ ଦ୍ରୌପଦୀ ନାଥ ।
କେତେ ପୁଷ୍ପ ଦେଇ ବିଷ୍ଣୁଙ୍କୁ ପୂଜନ୍ତି ଏ କଥା କହ ଯଥାର୍ଥ ॥

ଧର୍ମ ବୋଇଲେ ଅହଂସା ଆଦ ପୁତ୍ର ଦେଇକର ଭଣି ମୂଳେ ।
ସଧି ସୁଖ ସତ ଆଗ୍ରହ କରିଲେ ଅଷ୍ଟପୁତ୍ର ହୋଇ ସ୍ଥୂଳେ ॥
ଯୁଧିଷ୍ଠି ବୋଇଲେ ବହୁତ ଶାସ୍ତ୍ର ମୁଁ ଶୁଣିଲି ଯେ ତୁମ୍ଭ ମୁଖ ।
କେଉଁ ଭାବେ ପ୍ରାଣୀ ଦୁଃଖ ପାଉଥାନ୍ତି କେଉଁ ଭାବେ ପାନ୍ତି ସୁଖ ॥
କି ଭାବ କଲେ ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଭୁବନେ ଭଲ ବୋଲନ୍ତି ।
କେଉଁ ଭାବ କଲେ ଏ ସଂସାରେ ପୁଣି ନର ଭକ୍ତ ଜନ୍ମ ହୋନ୍ତି ॥

ଧର୍ମ ବୋଇଲେ ତୁ ଯାହା ପୁଚ୍ଛା କଲୁ ଏ କଥା ପ୍ରମାଣ ସିନା ।
କେଉଁ ଭାବେ ଦୁଃଖ କେଉଁ ଭାବେ ସୁଖ ତାହା ତୋତେ କହୁଁ କନା ॥
ଯେବର୍ଣ୍ଣ ପୂଜା କରିଲେ ଫଳ ହାଦେ ଦୁଃଖ ଭାଗୀ ହୁଏ କର୍ମ ।
ଅନ୍ନଦାନ ଯେଉଁ ପ୍ରାଣୀ ନ ଦିଅନ୍ତି ପୁଣି ଶୁଣି ହୋନ୍ତି ଜନ୍ମ ॥

ପରସ୍ତ୍ରୀଙ୍କ ଦେଖିଣ ଯେଉଁ ମାନେ ମଦନେ ଆରତ ହୋନ୍ତି ।
ସେ ପ୍ରାଣିମାନେଟି କୁମ୍ଭୀପାକ ନର୍କେ ପୁଣି ପୁଣି ଜନ୍ମ ପାନ୍ତି ॥
ଏସନ ବାଣୀ ଯୁଧିଷ୍ଠିରଦେବ ଶୁଣି ମନରେ ସନ୍ତୋଷ ହୋଇ ।
ବୋଇଲେ ଆବର ବଚନେକ ମୋତେ ପରସନ୍ନେ ଦିଅ କହି ॥

କେତେ ଆଙ୍ଗୁଳ ଆକାଶ ପଥ ଅଟେ ଗଗନରେ କେତେ ତାରା ।
କେତେ ଧାରେ ବରଷୁଅଛୁ ଜଳ କେତେ ହାତ ବସୁନ୍ଧରା ॥
ଧର୍ମ ବୋଇଲେ ବିସ୍ତାରଣେ କହିବା ମନେ କ୍ଷମା ଚିନ୍ତା କରୁ ।
ଏତେ ସନ୍ଧି କଥା ହୃଦରେ ବିଚାର ତୁହି ଯେ ପଚାର ପାରୁ ॥

ଆକାଶ ଚାର ଆଙ୍ଗୁଳ ଶୁଣ ତୁହି ଗଗନରେ ବେନି ତାରା ।
ଆଠୁଟ ହାତ ବସୁନ୍ଧରା ଅଟଇ ଜଳ ବୃଷ୍ଟି ଦଶ ଧାରା ॥
ଧର୍ମଙ୍କ ବଚନ ଶ୍ରବଣରେ ଶୁଣି ବୋଇଲେ ପଣ୍ଡୁ କୁମର ।
କେତେ ଅକ୍ଷରରେ ବ୍ରହ୍ମାଣ୍ଡ ହୋଇଛି କେତେ ଚକ୍ର କେଉଁ ପାର ॥

କେଉଁ ଚକ୍ରେ କେଉଁ ଦେବତା ବସଇ ଶିବଶକ୍ତି କାହିଁ କେତେ ।
କେଉଁ ଦେଉଳରୁ ପବନ ଫେଡ଼ଇ ବିସ୍ତାରି କହିବା ମୋତେ ॥
ଧର୍ମ ବୋଇଲେ ବାରଗୋଟି ମାତ୍ରା ଯେ ପଞ୍ଚାଶ ଅକ୍ଷରେ ଠୂଳେ ।
ଷଡ଼ଚକ୍ର ଯେଣେ ବ୍ରହ୍ମାଣ୍ଡ ହୋଇଛି ଅଣଚାଶ ବାୟୁ ମୂଳେ ॥

ମୂଳ କମଳେ ଗଣେଶ୍ୱର ଦେବତା ଶକ୍ତିମାକ ଯେନ ରହି ।
କଅଠାରୁ ଲଅ ଅକ୍ଷର ପର୍ଯ୍ୟନ୍ତ ଏ ଚାରି ପାଖୁଡ଼ା ତହିଁ ॥
ଲିଙ୍ଗ କମଳେ କାମେଶ୍ୱର ଦେବତା କାମାକ୍ଷୀକି ଯେନ କୋଳେ ।
ବଅଠାରୁ ଯେ ଲଅ ପର୍ଯ୍ୟନ୍ତେ ଷଡ଼ ପାଖୁଡ଼ାର ମୂଳେ ॥
ନାଭି କମଳେ ବେଦବର ଦେବତା ସାବିତ୍ରୀ ସଙ୍ଗତେ ବେନି ।
ଏ ଐ ଓ ଔଠାରୁ ଶିଆ ପର୍ଯ୍ୟନ୍ତ ଏ ଦଶ ପାଖୁଡ଼ା ଯେନି ॥

ହୃଦ କମଳେ ନାରାୟଣ ଦେବତା ମହାଲକ୍ଷ୍ମୀ ଯେନ କୋଳେ ।
କ ବର୍ଣ୍ଣଠାବରୁଁ ଠଅ ପର୍ଯ୍ୟନ୍ତେ ଦ୍ୱାଦଶ ପାଖୁଡ଼ା ମୂଳେ ॥
କଣ୍ଠ ଚକ୍ରରେ ଉମାଙ୍କୁ କୋଳେଯେନି ବିଜେ ନୀଳକଣ୍ଠେଶ୍ୱର ।
ଏ ଐ ଓ ଔ ଠାରୁ ଅବର୍ଣ୍ଣ ପର୍ଯ୍ୟନ୍ତ ଷୋଳ ପାଖୁଡ଼ାରେ ଘର ॥

ଲଲାଟ ଚକ୍ରେ ନିରଞ୍ଜନ ଦେବତା ଆଦ୍ୟ ଅପର୍ଣ୍ଣାଙ୍କୁ ଯେନି ।
ତିନି ଅକ୍ଷର ବେନିପାଖେ ବସନ୍ତି ହ କ୍ଷ ଦଳି ବୋଲି କହି ।
ଏଥୁ ବାହାର ହୋଇ ଗୁରୁଅକ୍ଷର ସିଦ୍ଧିରତ୍ନ ବୋଲି କହି ॥
ପୂର୍ବ ପଶ୍ଚିମ ଉତ୍ତର ଦକ୍ଷିଣରେ ଏମାନେ ଅଛନ୍ତି ରହି ॥

କହ ହୋ ଯୁଧିଷ୍ଠି ଲକ୍ଷଣ କି ତୁଷ୍ଟି ପ୍ରତେ ପାଇଲ କି ତତ୍ତ୍ୱ ।
ଚଣ୍ଡାଳ ବୋଲି ଆମ୍ଭଙ୍କୁ କାହିଁ ପାଇଁ ନିନ୍ଦାକଲୁ କୁନ୍ତୀସୁତ ॥
ଧର୍ମଙ୍କ ବଚନେ ଯୁଧିଷ୍ଠି ବୋଇଲେ ନ ଜାଣି ହୁଡ଼ିଲୁ ବାବା ।
କେଉଁ ଦେବତା ତୁ ମୋତେ ବଢ଼ିବାକୁ କପଟେ ଅଇଲୁ ଅବା ॥

ସ୍ୱରୂପ କହ ନୋହିଲେ ଦେବ ଦେହ ବିନାଶ କରିବି ଏଣେ ।
ମହାପାତକ ଯେ ତୁମ୍ଭଙ୍କୁ ଲାଗିବ ବେଦଶାସ୍ତ୍ର ପରମାଣେ ॥
ଯୁଧିଷ୍ଠିଙ୍କ ବାଣୀ ଧର୍ମ ଦେବ ଶୁଣି ବୋଇଲେ ଆମ୍ଭେ ତୋ ପିତା ।
ତୁ ଯେ ଆମ୍ଭପୁତ୍ର ସତ ଫଳୁଁ ହାଦେ ଜଗତେ ହୋଇଲୁ ଜେତା ॥

ଲକ୍ଷେ ରାଜାଙ୍କୁ ବରଣ କରି ଆଣି ରଚିଲୁ ରାଜସୂୟ ଯାଗ ।
ତେଣୁ କରି ତୋତେ ଦେଖିଣ ଅଇଲୁ ଆମ୍ଭର ବହୁତ ଭାଗ୍ୟ ॥
ଶୁଣିଣ ଯୁଧିଷ୍ଠି ଲକ୍ଷଣ ଯେ ତୁଷ୍ଟି ପାଦେ ପ୍ରଣିପାତ କଲେ ।
କୋଟି ଦଣ୍ଡବତ କରିଣ ପିତାଙ୍କୁ ଆପଣା ପୁରକୁ ନେଲେ ॥॥

ଚଣ୍ଡାଳ ରୂପକୁ ଗୁପତ କରିଣ ବାହାର କଲେ ଦେବ ଧର୍ମ ।
ଯୁଧିଷ୍ଠି ବୋଇଲେ ଈଶ୍ୱର ପାଇଲି ଆଜ ମୋ ମଙ୍ଗଳ କର୍ମ ॥
ପିତା ପୁତ୍ରେ ବସି ଏକଠାବେ ବସି କହନ୍ତି ସକଳ କଥା ।
ସନ୍ତ ଅନ୍ନ ଭୁଞ୍ଜି ସନ୍ତୋଷ ହୋଇଲେ ଆପଣେ ଧର୍ମ ଦେବତା ॥
ସେ ଦିନ ତହିଁ ହରଷ ଚିତ୍ତ ହୋଇ ରହିଲେ ଧର୍ମ ଗୋସାଇଁ ।
ଆନନ୍ଦ ମନେ ପ୍ରଭାତେ ଚଳିଲେ ଯୁଧିଷ୍ଠି ଦେବଙ୍କୁ କହି ॥
ସ୍ୱର୍ଗ ଭୁବନରେ ଅମର ପୁରରେ ପ୍ରବେଶ ହୋଇଲେ ପୁଣି ।
ଶ୍ରୀ ଜଗନ୍ନାଥଙ୍କ ଚରଣେ ଶରଣ ଦୀନକୃଷ୍ଣ ଦାସ ଭଣି ॥

—୦—

ସୁଜନେ ମୋହର ଦୋଷ ନ ଧରିବ ଶ୍ରବଣ ପଥରେ ଶୁଣି ।
ଧର୍ମଶାସ୍ତ୍ର ଏହି ବୋଲିବ ମହିମା ଅନୁଭବ ଥିଲେ ଜାଣ ॥
ସାଧୁ ଖାତକ ବାଧମତ ଯେତେକ ପ୍ରଳାପ ବଚନ ଯଥା ।
ପ୍ରତିବଧି କରି ଧର୍ମ ଯେ ଅଧର୍ମ ପାପ ପୁଣ୍ୟ ଦୁଇ କଥା ॥
ଶ୍ରୀକୃଷ୍ଣ ଚରିତ ଅତ୍ୟନ୍ତ ପବିତ୍ର ମୋ ଗୁରୁ କହିବ କାହିଁ ।
ଆଦି ଅନ୍ତ କରି ଲେଖି ସରସ୍ୱତୀ ଅନ୍ତ ନ ପାଇଲେ ସହି ॥
ମୁହିଁ ପାମର ମୂର୍ଖମତି ମୋହର ମୁଁ ଗୁରୁ କହିବ କାହିଁ ।
ପଦ ଯୋଡିବାକୁ ଆପଣା ଶ୍ରୀମୁଖେ ଆଜ୍ଞା ଦେଲେ ଲକ୍ଷ୍ମୀସାଇଁ ॥
ସେହି ଆସି ମୋର ହୃଦୟରେ ପଶି କହନ୍ତି ସକଳ କଥା ।
ତେଣୁ କରି ମୁହିଁ ଲେଖନ କରଇ ପୁରାଣ ଆଦି ବାରତା ॥
ସ୍ୱଜନ ଜନେ ହୃଦୟରେ ଗୁଣି ଯେ ନ ଧରିବ ମୋର ଦୋଷ ।
ଶ୍ରୀ ଜଗନ୍ନାଥଙ୍କ ଶରଣ ପଶିଲି ଅରକ୍ଷିତ କୃଷ୍ଣ ଦାସ ॥

ସ. ମ୍ପୂ. ର୍ଣ୍ଣ

---

ମୁଦ୍ରାକର—ଶ୍ରୀ ଅରକ୍ଷିତ ଦାସ, ଦାଶରଥି ପ୍ରେସ, କଟକ—୧୯୬୨